ତସଲିମା ନାସରିନ୍



# ଫେରା

ଭାଷାନ୍ତର

ଶେଷଦେବ ମଲ୍ଲିକ



*ତସଲିମା ନାସରିନ*

ଜନ୍ମ : ୨୫ ଅଗଷ୍ଟ ୧୯୬୨।
ମୟମନ ସିଂହ, ବାଂଲାଦେଶ ।
ମୟମନ ସିଂହ ମେଡିକେଲ କଲେଜରୁ ଏମ୍.ବି.ବି.ଏସ୍ ।
ବୃତ୍ତି : ଚିକିତ୍ସା ଓ ଲେଖା ।
ଅଭିରୁଚି : ଭ୍ରମଣ ।
ପ୍ରଥମେ କବିତା ରଚନାରୁ ସାହିତ୍ୟ-ଜୀବନର ଆରମ୍ଭ ଏବଂ ତା'ପରେ ଗଦ୍ୟରଚନା ପ୍ରତି ଆକୃଷ୍ଟ । ବିଭିନ୍ନ ପତ୍ର-ପତ୍ରିକାରେ ବ୍ୟକ୍ତିଗତ ସ୍ତମ୍ଭ (କଲାମ) ଲେଖି ଶାଣିତ ଭାଷା ଓ ବଳିଷ୍ଠ ମତାମତ ପାଇଁ ଯେଉଁଭଳି ଅସାଧାରଣ ଜନପ୍ରିୟତା ଅର୍ଜନ କରିଛନ୍ତି, ସେହିଭଳି ବିତର୍କିତ ମଧ ହୋଇଛନ୍ତି ।
ପ୍ରକାଶିତ କାବ୍ୟଗ୍ରନ୍ଥ : ନିର୍ବାସିତ ବାହିରେ ଅନ୍ତରେ, ଆମାର କିଛୁ ଯାୟ ଆସେନା, ଅତଲେ ଅନ୍ତରୀଣ, ବାଲିକାର ଗୋଲ୍ଲାଛୁଟ, ବେହୁଲା ଏକା ଭାସିୟେ ଛିଲ ଭେଲା, ପ୍ରେମେର କବିତା, ନିର୍ବାଚିତ କବିତା ।
ପ୍ରକାଶିତ ଉପନ୍ୟାସ : ଅପରପକ୍ଷ, ଶୋଧ, ନିମନ୍ତ୍ରଣ, ଭ୍ରମର କହିଓ ଗିୟା, ଫେରା, ଲଜ୍ଜା ।
ପ୍ରକାଶିତ ଗଦ୍ୟ ରଚନା : ନିର୍ବାଚିତ କଲାମ, ନଷ୍ଟ ମେୟେର ନଷ୍ଟ ଗଦ୍ୟ ।
ପୁରସ୍କାର ଓ ସମ୍ମାନ : ଆନନ୍ଦ ପୁରସ୍କାର (କଲିକତା-୧୯୯୨), ସାକାରୋଭ ପୁରସ୍କାର (୧୯୯୪),
ୟୁରୋପୀୟ ସମୁଦାୟ ପକ୍ଷରୁ ମାନବାଧିକାର ପୁରସ୍କାର (୧୯୯୪), 'ମୋନିସ୍ ମାନିନ୍' ପୁରସ୍କାର (ଷ୍ଟକହୋମ-୧୯୯୫) ।

ତସଲିମା ନାସରିନ

# ଫେରା

ଭାଷାନ୍ତର

ଶ୍ରୀ ଶେଷଦେବ ମଲ୍ଲିକ




ଫେରା

Fera

ଲେଖିକା : ତସଲିମା ନାସରିନ

ଭାଷାନ୍ତର : ଶ୍ରୀ ଶେଷଦେବ ମଲ୍ଲିକ

Author : Tasleema Nasrin

Translated by : Sheshadev Mallick



ପ୍ରକାଶକ : ସହଦେବ ପ୍ରଧାନ

ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ

Publisher : Sahadev Pradhan

*Friends' Publishers,* Binodbehari,

Cuttack-753 002, Orissa (India)

ପ୍ରଥମ ସଂସ୍କରଣ : ୧୯୯୫

ଦ୍ୱିତୀୟ ସଂସ୍କରଣ : ୧୯୯୮

ତୃତୀୟ ସଂସ୍କରଣ : ୨୦୦୫

First Edition : 1995

Second Edition : 1998

Third Edition : 2005 (505 Copies)

ଅକ୍ଷରସଜ୍ଜା : ୟୁନିଟେକ୍, କଟକ

Typeset : Unitech, Cuttack.

ମୁଦ୍ରଣ : ଇନ୍ଦ୍ରାଣୀ ପ୍ରିଣ୍ଟିଂ ପ୍ରେସ୍, କଟକ

Printer : Indrani Printing Press, Cuttack

ISBN 81-7401-095-5

Price : Rs. 40

ବିଶ୍ୱବ୍ୟାପୀ ସାହିତ୍ୟ କ୍ଷେତ୍ରରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ବାଂଲାଦେଶର ବହୁବିତର୍କିତା ଲେଖିକା ସୁଶ୍ରୀ ତସଲିମା ନାସରିନଙ୍କ ଅନବଦ୍ୟ ସୃଷ୍ଟି 'ଲଜ୍ଜା'ର ଓଡ଼ିଆ ଅନୁବାଦ କରି, ଓଡ଼ିଶାର ଅଗଣିତ ସାହିତ୍ୟପ୍ରେମୀ ପାଠକ / ପାଠିକାମାନଙ୍କୁ ଉପହାର ଦେବାର ସୌଭାଗ୍ୟ ଆମେ ଲାଭ କରିଥିଲୁ । ମାତ୍ର ଗୋଟାଏ ବର୍ଷ ମଧ୍ୟରେ ପାଞ୍ଚଟି ସଂସ୍କରଣରେ ମୁଦ୍ରିତ ହୋଇ ଏହା ଏକ ରେକର୍ଡ଼ ସୃଷ୍ଟି କରିବା ସହ ପ୍ରମାଣିତ କଲା ଯେ ଉଚ୍ଚାଙ୍ଗ ସାହିତ୍ୟ ପ୍ରତି ଓଡ଼ିଆ ପାଠକ / ପାଠିକାଙ୍କର ଅନୁରାଗ ଅନ୍ୟ ଯେକୌଣସି ରାଜ୍ୟର ପାଠକ / ପାଠିକାଙ୍କଠାରୁ କମ୍ ନୁହେଁ ।

ପରବର୍ତ୍ତୀ କାଳରେ ନାସରିନଙ୍କ ଆଉ ଏକ ଯୁଗାନ୍ତକାରୀ ପୁସ୍ତକ 'ନିର୍ବାଚିତ କଲାମ'ର ଓଡ଼ିଆ ରୂପାନ୍ତର ଆମେ ପ୍ରକାଶ କଲୁ । ଏ ପୁସ୍ତକ ମଧ୍ୟ ବହୁଳ ଭାବରେ ଆଦୃତ ହେଲା ।

ଅଗଣିତ ଜିଜ୍ଞାସୁ ପାଠକ / ପାଠିକା ତଥା ତସଲିମାଙ୍କ କୃତିମୁଗ୍ଧ ବନ୍ଧୁଙ୍କ ଅନୁରୋଧକ୍ରମେ ଆମେ ଭିନ୍ନସ୍ୱାଦର ଏହି ବଳିଷ୍ଠ ଉପନ୍ୟାସ 'ଫେରା'ର ଅନୁବାଦ ପ୍ରକାଶ କରୁଛୁ—ଏହି ଆଶାରେ ଯେ, ଚର୍ଚ୍ଚିତା ତସଲିମାଙ୍କ ପ୍ରଶଂସକମାନେ ପୂର୍ବଭଳି ଏହି ଉପନ୍ୟାସକୁ ଆପଣାର କରିନେବେ ।

ପ୍ରକାଶକ

## = ଏକ =

ପ୍ଲେନ୍‌ର ସିଡ଼ିରୁ ଓହ୍ଲାଉଥିବା ସମୟରେ କଲ୍ୟାଣୀ ଚାରିଆଡ଼କୁ ଚାହିଁ ଦେଖୁଥିଲା । ପଛରୁ ଦୀପେନ କହିଲା–'କ'ଣ ତୁମେ ନ ଓହ୍ଲାଇ ପାଣି ପିଇବ ?'

ହଁ, କଲ୍ୟାଣୀ ପାଣି ପିଇବ, ପାଣି ନ ପିଇଲେ ତା'ର ଆତ୍ମା ଶାନ୍ତି ପାଇବ ନାହିଁ । ଜନ୍ମଭୂମି ଜଳରେ ଯେଉଁ ସ୍ୱାଦ, ସେ ସ୍ୱାଦ କ'ଣ ଅନ୍ୟ କୌଣସି ଜଳରୁ ମିଳେ ? କଲିକତାରେ ସେ ତିରିଶ ବର୍ଷ ଅତିବାହିତ କରିଛି, ମାତ୍ର ଏପରି ସ୍ୱାଦର ଜଳ ସେ ଢୋକେ ମଧ୍ୟ ପିଇନାହିଁ ।

କଲ୍ୟାଣୀର ବୟସ ଯେତେବେଳେ ଅଠର ବର୍ଷ ସେ ଆନନ୍ଦମୋହନ କଲେଜରେ ପଢୁଥିଲା । ସେହି କଲେଜରେ ତା'ର ବାପା ପଢ଼ିଥିଲେ, ଭାଇ ପଢ଼ିଥିଲେ । କଲେଜର ଏକ ସ୍ୱତନ୍ତ୍ର ସୁନାମ ଥିଲା । କିଶୋରଗଞ୍ଜ, ନେତ୍ରକୋଣା, ଜାମାଲପୁର, ଗୌରୀପୁରଠାରୁ ପିଲାମାନେ ପଢ଼ିବା ପାଇଁ ଆସୁଥିଲେ । ମଫସଲରୁ ଆସିଥିବା ସେହି ପିଲାମାନେ ଚିତ୍ରିତ ଟିଣବାକ୍‌ସ ଧରି ଯେତେବେଳେ ସହରୀ ରାସ୍ତାରେ ଚାଲୁଥାନ୍ତି, ସେମାନେ ସାଇକେଲ ରିକ୍‌ସାର ଟିଂ ଟିଂ ଶବ୍ଦର ସଙ୍କେତ ଠିକ୍ ଭାବରେ ବୁଝିନପାରି ଇତସ୍ତତଃ ହୋଇଯାଆନ୍ତି । ସମତା ରକ୍ଷା କରିନପାରି ରାସ୍ତାରେ ମୁହଁମାଡ଼ି କଚାଡ଼ି ପଡ଼ନ୍ତି, ସେମାନଙ୍କ ଉପରେ ସାଇକେଲ ପଡ଼ିଯାଏ । ଏପରି ଦୃଶ୍ୟ ଦେଖିବା ପରେ କଲ୍ୟାଣୀର ବଡ଼ଭାଇ ଜ୍ୟୋତିପ୍ରକାଶ ସେମାନଙ୍କ ନାମ ଦେଇଥିଲା 'ବଳଦ' । ପ୍ରଥମ ଅବସ୍ଥାରେ ସେମାନେ ବାଳରେ ସୋରିଷ ତେଲ ଲଗାଇ ଚିକ୍‌କଣ କରି କ୍ଲାସକୁ ଆସୁଥିଲେ । ସାର୍ଟ ପକେଟରେ 'ଭୁଲିବନି ମୋତେ' ଲେଖାଥିବା ରୁମାଲ ଭାଙ୍ଗିକରି ରଖୁଥିଲେ ଓ ଅବସର ମିଳିଲେ ପାଉଡ଼ର ବୋଳା ବେକରୁ ସେହି ରୁମାଲରେ ଝାଳ ପୋଛୁଥିଲେ । ପଛ ବେଞ୍ଚରେ ବସି ନିର୍ଲିପ୍ତ ନୟନରେ ବ୍ଲାକବୋର୍ଡ଼କୁ ଚାହିଁରହନ୍ତି, ଶିକ୍ଷକମାନଙ୍କର କଥା ଅଧେ ବୁଝନ୍ତି ତ ଆଉ ଅଧେ ବୁଝିପାରନ୍ତି ନାହିଁ । ଝିଅମାନଙ୍କ ସହିତ କଥା କହିବାକୁ ଗଲେ ସେମାନଙ୍କ ଗଳା ଥରେ । ଅଫ୍ ପିରିୟଡ଼ମାନଙ୍କରେ ଯେତେବେଳେ ଅନ୍ୟ ଛାତ୍ରମାନେ କରିଡ଼ର ବା

ପଡ଼ିଆରେ ବସି ଆଡ୍‌ଡ଼ା ମାରନ୍ତି ସେମାନେ ବ୍ୟବଧାନ ରକ୍ଷାକରି ଛିଡ଼ାହୋଇ ରୁହନ୍ତି । ସେମାନଙ୍କ ମନରେ ପ୍ରଶ୍ନବାଚୀ 'ସେମାନଙ୍କୁ ଖେଳସାଥୀ କରିବେ କି ନାହିଁ ?' ସର୍ବ ଶେଷରେ ଏହି 'ବଳଦ' ଉପାଧିଧାରୀମାନେ ପରୀକ୍ଷାରେ ସହରର ସ୍ମାର୍ଟ ଛାତ୍ରମାନଙ୍କୁ ଚିତ୍ କରିଦିଅନ୍ତି । ଏହା ପରେ ପରେ ବାଳ ସଜାଇ ଟେରିକାଟି କଲେଜ ଯାଆନ୍ତି, ସମୟେ ସମୟେ ସାର୍ଟର ଦୁଇ ତିନିଟା ବୋତାମ ଖୋଲା ରଖନ୍ତି, କେତେଗୁଡ଼ିଏ ଇଂରେଜୀ ବାକ୍ୟ ଆବୃତ୍ତି କରନ୍ତି, ଝିଅମାନଙ୍କୁ 'ଆଇ ଲଭ ୟୁ' ଚିରକୁଟି ଦିଅନ୍ତି, ଅବଜ୍ଞାସୂଚକ କଥାବାର୍ତ୍ତା ଆରମ୍ଭ କରିବା ଶିଖନ୍ତି । ଜ୍ୟୋତିପ୍ରକାଶ କଥାକଥାକେ ଅନ୍ୟୁନ ଦୈନିକ ଦୁଇଥର ସେମାନଙ୍କୁ ଅପମାନ କରେ ଓ ପରବର୍ତ୍ତୀ ସମୟରେ ସେମାନଙ୍କ ନିକଟକୁ ହିଁ ପାଠ ବୁଝିବାପାଇଁ ଯାଏ । ଗୋଟିଚାଳନା ନାମକ ଏକ ଖେଳରେ ଯେଉଁଥିରେ କି ଖେଳାଳି ଭାବରେ ତା'ର ବହୁଦିନରୁ ସୁଖ୍ୟାତି ଥିଲା, ସେ ନୀତିଶ ନାମକ ଜଣେ ସାଧାରଣ ମଫସଲୀ ଟୋକା ସହ ଖେଳି ପରାଜିତ ହୁଏ । ଏହି ସମସ୍ତ କାରଣରୁ ଜ୍ୟୋତିପ୍ରକାଶ ଏତେ କ୍ରୋଧାନ୍ୱିତ ହୁଏ ଯେ, ସ୍ଥାନୀୟ ଛାତ୍ରମାନଙ୍କୁ ସେମାନଙ୍କ ବିରୁଦ୍ଧରେ ଏକତ୍ରିତ ହେବାପାଇଁ ପରାମର୍ଶ ଦିଏ । କେହି ଯଦି ସେମାନଙ୍କ ବିରୁଦ୍ଧରେ ଥିବା ଅଭିଯୋଗ ଓ ତା'ର କାରଣ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରେ ତେବେ ସେ କୁହେ ଏମାନେ କଲେଜ ପଡ଼ିଆକୁ ଅପରିଷ୍କାର କରୁଛନ୍ତି, କାନ୍ଥରେ ପାନପିକ ପକାଉଛନ୍ତି, ପୋଖରୀର ଜଳ ଗୋଳିଆ କରୁଛନ୍ତି । ଅବଶ୍ୟ ଜ୍ୟୋତିପ୍ରକାଶର ଏ ପ୍ରକାର ଆନ୍ଦୋଳନ ଦୀର୍ଘସ୍ଥାୟୀ ହୋଇପାରେ ନାହିଁ । ଏହାର କାରଣ ହେଉଛି ସେହି ବଳଦମାନେ କେବଳ ଲେଖାପଢ଼ାରେ ନୁହେଁ, ଗାଇବା ବଜାଇବାଠାରୁ ଆରମ୍ଭକରି ଖେଳକୁଦ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ ବେଶ୍ ସୁନାମ ଅର୍ଜନ କରିଯାଇଥାନ୍ତି । ଜ୍ୟୋତିପ୍ରକାଶର ଘନିଷ୍ଠ ବନ୍ଧୁମାନେ ଶେଷରେ ସେଇମାନଙ୍କ ପଛରେ ଗୋଡ଼ାନ୍ତି । କଲ୍ୟାଣୀ ପ୍ରଥମ ଅବସ୍ଥାରେ ଯେତେବେଳେ ଆନନ୍ଦମୋହନ କଲେଜକୁ କ୍ଲାସ କରିବା ପାଇଁ ଯାଏ, ଜ୍ୟୋତିପ୍ରକାଶ କହିଥିଲା—'ଦେଖ୍ ସେମାନଙ୍କୁ ଯେପରି ଫାଷ୍ଟ୍-ସେକେଣ୍ଡ ହେବାକୁ ଦେବୁନାହିଁ । ପରିଶ୍ରମ କରି ପଢ଼ାଲେଖା କରିବୁ । ସେମାନେ କେଉଁଠି ମଫସଲ କ୍ଷେତରେ ଡିବିରି ଜାଳି ପଣକିଆ ଘୋଷୁଥିଲେ, ଏଠାକୁ ଆସି ଆମ୍ଭମାନଙ୍କ ସହ ଚମତ୍କାର ଭାବେ ଟକ୍କର ଦେଇଯାଉଛନ୍ତି ।' ଏହି ସମୟରେ ପରିମଳ ଥିଲା ଜିଲ୍ଲା ସ୍କୁଲର ଛାତ୍ର, କଲ୍ୟାଣୀର କାନେ କାନେ ସେ କହିଥିଲା— 'ତୁ ଯଦି ଏକ ମଫସଲୀକୁ ପ୍ରେମକରି ବସୁ ତେବେ ଦେଖିବାକୁ ପାଇବୁ ତୋର ଭାଇଙ୍କ ଅସଲ ଭୟଙ୍କର ଚେହେରା ।' କଲ୍ୟାଣୀ ହସି ହସି କହିଥିଲା—'ପାଗଳ ହେଇଛୁ ।' ସେହି କଲ୍ୟାଣୀର ଏ କି ଅଦ୍ଭୁତ କାଣ୍ଡ, କଲେଜରେ ସୁନ୍ଦର ସୁନ୍ଦର ଟୋକାଥିବା ସତ୍ତ୍ୱେ ସେ

ଅତି କଳାରଙ୍ଗର ବାଦଲ ସହ ସମ୍ପର୍କ ସ୍ଥାପନ କଲା । ନାଲିତାବାଡ଼ିର ଟୋକା, ସେତେବେଳକୁ ତା' ଦେହରୁ ଧାନସିଝାର ଗନ୍ଧ ଯାଇ ନଥାଏ—ସାର୍ଟର ଛାତିପକେଟରେ ଫାଉଣ୍ଟେନ ପେନ୍ ଥାଏ, ଗୋଲ ଫ୍ରେମ୍‌ର ଚଷମା ପିନ୍ଧେ, ବାଳରେ ମାରିଥିବା ତେଲ ଗଡ଼ିଆସି ବେକଷଣ୍ଢା ଚିକ୍‌ଚିକ୍ କରୁଥାଏ—ସେହି ବାଦଲ ଥରେ କଲ୍ୟାଣୀର ଫିଜିକ୍‌ସ ବହି ମାଗିନେଇ ତିନିଦିନ ପରେ ଫେରାଇଦେଲା । ବହି ଭିତରେ ଏକ ଚିଠିରେ ଲେଖିଥିଲା, 'କଲ୍ୟାଣୀ ପ୍ରିୟବରେଷୁ, ତୁମେ ଆକାଶର ଚାନ୍ଦ ସେକଥା ମୁଁ ଜାଣେ, ମୁଁ କିନ୍ତୁ ବାମନ ନୁହେଁ । ଇତି ବାଦଲ ।' ଏହାପରେ କଲ୍ୟାଣୀ ରାତି ରାତି ଅନିଦ୍ରାରେ କଟାଉଥିଲା, ଦୋତାଲା ବାରଣ୍ଡାରେ ଛିଡ଼ାହୋଇ ଆକାଶକୁ ଚାହିଁରହୁଥିଲା, ଇଜିଚେୟାରରେ ଶୋଇ ରାତିସାରା ପୂର୍ଣ୍ଣିମା ତିଥିରେ ଚାନ୍ଦକୁ ଚାହିଁ ରହୁଥିଲା । ଜ୍ୟୋତିପ୍ରକାଶ କ'ଣ ସେତେବେଳେ ଜାଣିଥିଲା—କାହାର କଥା ଭାବି ଭାବି କଲ୍ୟାଣୀ ଇନ୍‌ସୋମନିୟା ଭୋଗ କରୁଛି ! କଲେଜରେ ପହଞ୍ଚି ମନେ ମନେ ପ୍ରଥମେ ବାଦଲକୁ ଖୋଜେ । ଯଦି କୌଣସି ଦିନ ତାକୁ ଦେଖିବାକୁ ନପାଏ ତେବେ ଅସ୍ଥିରତା ଅନୁଭବ କରେ । କଲ୍ୟାଣୀ ନିଜେ ଆଶ୍ଚର୍ଯ୍ୟ ହୁଏ, କାହିଁ ଆଉ କାହାପାଇଁ ତ ତା'ର ଏପରି ହୁଏ ନାହିଁ । ବାଦଲକୁ ଥରଟିଏ ମାତ୍ର ଦେଖାକରିବା ପାଇଁ, ଥରେମାତ୍ର ତା' ସହିତ କଥାବାର୍ତ୍ତା ହେବାପାଇଁ ଅନ୍ତର ମଧ୍ୟରେ ଯେପରି ସେ ଶୂନ୍ୟତା ଅନୁଭବ କରେ । ସେହି ନିରୀହ ତୈଳାକ୍ତ ଶରୀରଧାରୀ ବାଦଲ, ଦିନେ ମଧ୍ୟାହ୍ନରେ କେମେଷ୍ଟ୍ରିକ୍ଲାସ ମାରାକରି କଲେଜ କ୍ୟାମ୍ପସ୍‌ର ଉତ୍ତର ଦିଗରେ ଥିବା ଶିମୁଳିଗଛ ତଳେ କଲ୍ୟାଣୀକୁ ସାକ୍ଷାତ କରିବାପାଇଁ ସୂଚନା ଦିଏ, କିଛି ଗୋଟାଏ ଜରୁରୀ କଥା ବାହାନାରେ । କଲ୍ୟାଣୀ ତଦନୁସାରେ ସେଠାରେ ପହଞ୍ଚେ । ସେ ଦେଖେ ବାଦଲ ବହି-ଖାତା ମୁଣ୍ଡତଳେ ରଖି ଶୋଇ ରହିଛି । କଲ୍ୟାଣୀକୁ ଦେଖି ଗଛମୂଳକୁ ଘୁଞ୍ଚିଯାଇ ଭରାଦେଇ ବସେ । ଏହି ସମୟରେ ବାଦଲକୁ ଦେଖିଲେ ଅସୁନ୍ଦର ମନେହୁଏ ନାହିଁ, ବରଂ ତାହାର ଠିଆ ନାକ, ଡିମାଡମା ଆଖି, ଘନ କଳାକେଶ ପରିପୂର୍ଣ୍ଣ ମୁଣ୍ଡ ଆଡ଼କୁ କଲ୍ୟାଣୀର ଦୃଷ୍ଟି ବାରମ୍ବାର ଆକର୍ଷିତ ହୋଇଯାଏ । କେହି ଯଦି ଦେଖନ୍ତି ତେବେ ଯେ କି ସର୍ବନାଶ ହେବ ଏହି କଥା କଲ୍ୟାଣୀକୁ ଛେପଢୋକି କହିବାକୁ ହୋଇଥାଏ । ବାଦଲର କିନ୍ତୁ ନିର୍ବିକାର ଭାବ । ତା' ଚକ୍ଷୁ କିମ୍ବା ମୁଖମଣ୍ଡଳରେ ସାମାନ୍ୟତମ ଆତଙ୍କର ଚିହ୍ନ ନଥାଏ । ଅପର ପକ୍ଷରେ ସେ କହେ—'ଦୁର୍, ମୁଁ କାହାକୁ କେୟାର କରେନା ।' ଜରୁରୀ କଥାଟା କ'ଣ ଜାଣିବାପାଇଁ ପଚାରିବାମାତ୍ରେ ସେ କୌଣସି ଉପକ୍ରମଣିକା ନଦେଇ କୁହେ—'ମୁଁ ତୁମକୁ ଭଲପାଏ ।' ଏହା ଶୁଣି କଲ୍ୟାଣୀର ଅନ୍ତର ପରିପୂର୍ଣ୍ଣ ହୋଇଉଠେ । ସେ ଦାନ୍ତରେ ନଖ କାମୁଡ଼େ, ଖାତା ଖୋଲି ଅଯଥାରେ ପୃଷ୍ଠା

ଲେଉଟାଏ, ଘାସ ଛିଡ଼ାଏ । କଲ୍ୟାଣୀ ବୁଝିପାରେ ନାହିଁ 'ଭଲପାଇବା' ଶବ୍ଦଟା ମଣିଷକୁ ଏପରି ବିପର୍ଯ୍ୟସ୍ତ କରି ପକାଏ ବୋଲି । କ୍ଲାସର ଚାରିକାନ୍ଥ ମଧ୍ୟରେ ତା'ର ମନ ସ୍ଥିର ରୁହେନାହିଁ, ଉଦାସ ମନୋଭାବ ନେଇ ଘର ଛାତଉପରେ ପଦଚାରଣା କରେ, ଲୁଚି ଲୁଚି ଚିଠି ଲେଖେ । ଏହା ଦେଖି ଘରର ସବୁଠାରୁ ବଦଖିଆଲୀ ସ୍ୱଭାବର ପିଲା ଜ୍ୟୋତିପ୍ରକାଶ ଦିନେ କହିଲା–'ତୋର କ'ଣ ହୋଇଛି କହ ତ ? ପ୍ରେମ ଫ୍ରେମରେ ପଡ଼ିନାହୁଁ ତ ?' କଲେଜରୁ ପଳାଇଯାଇ ସେମାନେ ଏହି ସମୟରେ ଲେଡ଼ିଜ ପାର୍କରେ ମିଳିତ ହେଉଥିଲେ; ନୌକାକରି ଆର ପାରିକୁ ଚାଲିଯାଉଥିଲେ, ନିଶ୍ୱାସର ଶବ୍ଦ ଶୁଣାଯିବା ଭଳି ଘନିଷ୍ଠ ହୋଇ ବସି ବାଦଲ ତା'ର ହାତଛୁଇଁ କହେ–'ତୁମକୁ ଛାଡ଼ି ମୁଁ ବଞ୍ଚିବି ନାହିଁ କଲ୍ୟାଣୀ ।' ଏହିପରି ଏକ ହୃଦୟକମ୍ପନର ଚରମ ମୁହୂର୍ତ୍ତରେ କଲ୍ୟାଣୀର ପିତା କୋର୍ଟର ଡେପୁଟି ମାଜିଷ୍ଟ୍ରେଟ ହରିନାରାୟଣ ରାୟ ଦିନେ ଘରକୁ ଆସି ଘୋଷଣା କଲେ–'ଜିନିଷପତ୍ର ବନ୍ଧାବନ୍ଧି କର, ଇଣ୍ଡିଆ ଯିବାକୁ ହେବ ।' କଲ୍ୟାଣୀ ବିସ୍ମିତ ହୋଇଥିଲା–'ଇଣ୍ଡିଆ କାହିଁକି ? ଇଣ୍ଡିଆ ମୁଁ ଯିବିନାହିଁ ।'

ଏବେବି କାନ ପାତିଲେ ସଦରଘାଟରୁ ଭାସିଆସୁଥିବା ଷ୍ଟିମରର ଭୁଁ ଶବ୍ଦଟି ସେ ଶୁଣିବାକୁ ପାଏ, ଶବ୍ଦଟି ପବନରେ ଭାସି ବୁଲୁଥାଏ ନା ତା'ର ମନ ମଧ୍ୟରେ ଅନୁରଣିତ ହେଉଥାଏ ଏହି ତୀବ୍ର ହାହାକାର–ଛ' ବର୍ଷ ବୟସରେ କଲ୍ୟାଣୀ ତା'ର ପିତାଙ୍କ ହାତଧରି ପିଉସୀମା'ଙ୍କୁ ବିଦାୟ ଦେବାପାଇଁ ଷ୍ଟିମର ଘାଟକୁ ଯାଇଥିଲା । ପିଉସୀମା' ଦେଶଛାଡ଼ି ଚାଲିଯାଉଥିଲେ । ପିଉସୀଙ୍କର ତଥା ବାପାଙ୍କର ଅନେକ ପରିଚିତ ଲୋକଙ୍କ ସହ ବହୁ ଦେଶତ୍ୟାଗୀ ସେଦିନ ଷ୍ଟିମରରେ ଥିଲେ । ଷ୍ଟିମର ଘାଟ ଛାଡ଼ିଯିବା ପାଇଁ ଯେତେବେଳେ ଭୁଁ-କରି ସିଟି ବଜାଇଲା ସେତେବେଳେ ଷ୍ଟିମରରୁ ଆକାଶଫଟା କରୁଣ ଚିତ୍କାର ଭାସିଆସିଲା । ଷ୍ଟିମରର ଭୁଁ ଶବ୍ଦ ସେହି କରୁଣ କାତର ଆର୍ତ୍ତନାଦ ନିକଟରେ ନିଃଶବ୍ଦ ମନେହେଲା । ଡେକ୍‌ର ରେଲିଂ ଧରି ପିଉସୀମା, ପିଉସା, ପିଉସାପୁଅ ଭାଇ, ଦୁଇଭଉଣୀ ଛିଡ଼ାହୋଇ କାତର ଦୃଷ୍ଟିରେ ଚାହିଁ ରହିଥିଲେ । କଲ୍ୟାଣୀ ସ୍ପଷ୍ଟଭାବେ ଦେଖିଥିଲା, ଷ୍ଟିମର ଦୋହଲି ଉଠିବାମାତ୍ରେ ଏମାନେ କାନ୍ଦି କାନ୍ଦି ଲୋଟିପଡୁଛନ୍ତି । ବାପାଙ୍କ ପାଖରୁ ସେ ଜାଣିବାକୁ ଚାହିଁଥିଲା–'ଏମାନେ କାହିଁକି କାନ୍ଦୁଛନ୍ତି ବାପା ?' ହରିନାରାୟଣ ସାର୍ଟର ହାତରେ ନିଜର ଲୁହ ପୋଛି କହିଥିଲେ–'ତୁ ବୁଝିପାରିବୁ ନାହିଁ ।' କଲିକତାରେ ସୁନାମ ଅର୍ଜନ କରିଥିବା ସ୍କୁଲ କଲେଜ ଅଛି, ଭିକ୍ଟୋରିୟା ମେମୋରିୟାଲ୍ ଅଛି, କିଲ୍ଲାପଡ଼ିଆ, ଇଡ଼େନ୍ ଗାର୍ଡେନ୍, ସାହେବମାନଙ୍କଦ୍ୱାରା ନିର୍ମିତ ବଡ଼ ବଡ଼ କୋଠାଘର, ହାଓଡ଼ା ବ୍ରିଜ ଅଛି–ତେବେ ସବୁ ମଣିଷ ଯିବା ସମୟରେ କାନ୍ଦନ୍ତି କାହିଁକି ? ସେ ଏହାର ଯଥାର୍ଥ

ଉତ୍ତର ତା'ର ଜ୍ୟୋତିଭାଇଙ୍କଠାରୁ ଜାଣିବାକୁ ଚାହିଁଥିଲା । ଜ୍ୟୋତିଭାଇ କହିଥିଲେ– 'ନିଜେ ଯେତେବେଳେ ଯିବୁ ବୁଝିବୁ, ଯେଉଁ ଲୋକ ଯାଇନାହିଁ ସେ କୌଣସିମତେ ବୁଝିପାରିବ ନାହିଁ, ଯେଉଁମାନେ ଯାଉଛନ୍ତି ସେମାନେ କାନ୍ଦୁଛନ୍ତି କାହିଁକି ?' ଯିବାପାଇଁ ସ୍ଥିର ହୋଇଥିବା ଦିନଟିର ଖୁବ୍ ସକାଳୁ କଲ୍ୟାଣୀ ପଳାଇ ଯାଇ ଶରିଫାଙ୍କ ଘର ଛାତଉପରକୁ ଯିବାପାଇଁ ଥିବା ସିଡ଼ିଘରେ କୁଙ୍କୁରିକାଙ୍କୁରି ହୋଇ ବସି ରହିଥିଲା । ଉଦ୍ଦେଶ୍ୟ ଥିଲା ଯେପରି କେହି ତାକୁ ଦେଖିନପାରନ୍ତି । ମନେ ମନେ ଭାବୁଥାଏ କେହି ତାକୁ ଦେଖି ନପାରନ୍ତୁ, ଖୁବ୍ ଶୀଘ୍ର ଅପରାହ୍ନ ଅତିକ୍ରମ କରି ସନ୍ଧ୍ୟା ନଇଁଆସୁ, ତା'ର ଇଣ୍ଡିଆ ଯିବା ବାତିଲ ହୋଇଯାଉ । ମାତ୍ର କଲ୍ୟାଣୀ ହରିନାରାୟଣ ରାୟଙ୍କ ହାତରେ ଧରାପଡ଼ିଗଲା । ତାକୁ ଟଣାଓଟରା କରି ସେ ସେଠାରୁ ନେଇଆସିଲେ । କଲ୍ୟାଣୀ ଥରେ ତାଙ୍କ ଘରର ଦରଜା, ଥରେ ବାରଣ୍ଡାରେ, ଥରେ ସରଳାବାଳାଙ୍କ ହାତଧରି, ଥରେ ତୁଳସୀ ଚଉରାକୁ ଜାବୁଡ଼ିଧରି ଭୋ ଭୋ କରି କାନ୍ଦିଉଠିଲା । ଘାଟ ଛାଡ଼ି ଯାଉଥିବା ଷ୍ଟିମରରୁ କାହିଁକି ଆର୍ତ୍ତନାଦ ଉଠେ, କଲ୍ୟାଣୀ ସେହିଦିନ ହିଁ ଅନୁଭବ କରିଥିଲା ।

ଜ୍ୟୋତିଭାଇ, ପରିମଳ, ନୀଳୋତ୍ପଳ କକା ଆଉ ତାଙ୍କ ଝିଅ ବାଣୀ ସହିତ କଲ୍ୟାଣୀକୁ ଟ୍ରେନ୍‌ରେ ଉଠିବାକୁ ପଡ଼ିଥିଲା, ହରିନାରାୟଣ ମୟମନସିଂହ ଜଙ୍କସନ୍ ପ୍ଲାଟ୍‌ଫର୍ମରେ ଛିଡ଼ାହୋଇ ତାଙ୍କର ପୁତ୍ର, କନ୍ୟା, ଭାଇ ଓ ଭାଇଝିଅଙ୍କ ଉଦ୍ଦେଶ୍ୟରେ ଯେତେବେଳେ ହାତ ହଲାଉଥିଲେ, ସେ କ'ଣ ଜାଣିଥିଲେ ଏମାନଙ୍କ ସହିତ ଏହା ତାଙ୍କର ଅନ୍ତିମ ସାକ୍ଷାତ୍ ଥିଲା ? କଲ୍ୟାଣୀ କ'ଣ କେବେ ଭାବିଥିଲା ବାଦଲକୁ ଦେଇଥିବା ଶୀଘ୍ର ଫେରିଆସିବାର ପ୍ରତିଶ୍ରୁତି ସେ ଆଉ ରକ୍ଷା କରିପାରିବ ନାହିଁ ? ଶରିଫା, ଶାହାନା, ମୁନ୍ନିଙ୍କୁ ମଧ୍ୟ ପ୍ରତିଶ୍ରୁତି ଦେଇଥିଲା–'ଦେଖ ସୁବିଧା ମିଳିଲେ ମୁଁ ଚାଲିଆସିବି ।' ଏ ପ୍ରକାର ସୁବିଧା ସୁଯୋଗ କ'ଣ ତିରିଶ ବର୍ଷ ମଧ୍ୟରେ କଲ୍ୟାଣୀ ପାଇନାହିଁ ! ନା ସେମାନଙ୍କୁ ସେ ଫାଙ୍କି ଦେଇଛି, ମଝିରେ ମଝିରେ କଲ୍ୟାଣୀର ମନେହୁଏ ସେ ନିଜେ ହିଁ ନିଜକୁ ଫାଙ୍କି ଦେଇଛି ।

କଲ୍ୟାଣୀ ଓ ତା' ସହିତ ଆସିଥିବା ଅନ୍ୟମାନେ ତିଳଜଳା ସ୍ଥିତ ଏକ ଅପରିଚ୍ଛନ୍ନ ଗୃହମଧ୍ୟକୁ ପ୍ରବେଶ କଲେ । ପ୍ରଥମେ ପ୍ରଥମେ କେତେଦିନ ସେମାନେ ଏଠାରେ ଶ୍ୱାସରୁଦ୍ଧ ହେଉଥିବାର ଅନୁଭବ କରୁଥିଲେ । ମନେ ହୁଏ ଗଛର ପତ୍ର ହଲୁନାହିଁ, ପବନ ବହୁନାହିଁ, କାନ ପାଖରେ ସର୍ବଦା ମଣିଷଙ୍କ କୋଳାହଳ ଓ ଯାନବାହନର ବିକଟ ଚିତ୍କାର । ମଣିଷମାନଙ୍କ କଥା ବୁଝିହୁଏ ନାହିଁ, ଚଲାବୁଲା କରିବା ମଧ୍ୟ ବଡ଼ ଅଦ୍ଭୁତ ଧରଣର ।

ସେ ଅନୁଭବ କରେ ସବୁ ସମୟରେ ସେମାନେ ଯେପରି ଦୌଡ଼ିବାରେ ଲାଗିଛନ୍ତି । ବଡ଼ମାମୁଙ୍କ ଝିଅମାନେ ତାକୁ ଆନ୍ତରିକ ଭାବ ନେଇ ପାଖକୁ ଡାକନ୍ତି ନାହିଁ, ମାଇଁ ଜଣେ ସ୍କୁଲଶିକ୍ଷିକା, ସକାଳେ ଘରୁ ବାହାରକୁ ଯିବା ପୂର୍ବରୁ କଲ୍ୟାଣୀକୁ ଡାକି କହିଯା'ନ୍ତି– 'ଘରଦୁଆର ଅପରିଚ୍ଛନ୍ନ ହୋଇଛି, ଘରେ ତ ରହିଛ, ଟିକିଏ ଓଳେଇ ଦେବ ! ଆଉ ଗୋଟିଏ କଥା, ଗାଧୁଆଘରେ ମୋର ଶାଢ଼ିଟି ରହିଛି, ସ୍କୁଲ ଯିବାର ସମୟ ବିଳମ୍ବ ହୋଇଯିବ ଚିନ୍ତାକରି ଧୋଇପାରିଲି ନାହିଁ, ତୁମେ ଗାଧୋଇବା ପୂର୍ବରୁ ତାହା ସଫାକରି ଦେବ ।' କାଳିବାଡ଼ିର ଘରେ କଲ୍ୟାଣୀକୁ ଯେତେବେଳେ ତେର ଚଉଦ ବର୍ଷ ବୟସ, ସରଳାବାଳା ମଝିରେ ମଝିରେ କଲ୍ୟାଣୀକୁ ରୋଷେଇ ଘରକୁ ଡାକନ୍ତି, କୁହନ୍ତି–'ଝିଅ ହୋଇ ଜନମ ହୋଇଛୁ, କିଛି କାମଦାମ ନଶିଖିଲେ ଚଳିବ ?' ପରିବା କାଟିବା, ଶାଗ ବାଛିବା କାମ କଲ୍ୟାଣୀକୁ ଦିଅନ୍ତି । ଏହାଦେଖି ଥରେ ହରିନାରାୟଣ କହିଥିଲେ–'ଝିଅ ମୋର ଲେଖାପଢ଼ା କରିବ, ତାକୁ ଦାସୀ ପୋଇଲୀ ହେବାର ଟ୍ରେନିଂ ଦିଅନାହିଁ ।' ଯେଉଁ ଝିଅଟି ଅଲିଅଳରେ ବଢ଼ି ନିଜର ଲୁଗା କେବେ ସଫା କରିନଥିଲା, ସେ କଲିକତାକୁ ଆସି ପ୍ରଥମେ ମାଇଁ ଓ ପରେ ପରେ ମାମୁଝିଅ ଭଉଣୀମାନଙ୍କ ଲୁଗା ମଧ୍ୟ ସଫା କରିବାକୁ ଲାଗିଲା । ଧୀରେ ଧୀରେ ତାକୁ ରୋଷେଇ ଘରର ସବୁ କିଛି କାମ କରିବାକୁ ପଡ଼ିଲା । ଲୁଣ ବା ମସଲାର ପରିମାଣ ସାମାନ୍ୟ ଭୁଲ ହୋଇଗଲେ ମାଇଁ କହୁଥିଲେ–'ବଙ୍ଗାଳୀ ଝିଅ ହୋଇ ରାନ୍ଧଣା ଶିଖିନାହୁଁ ।' ମାମୁଝିଅ ଭଉଣୀମାନେ ରାନ୍ଧଣା ଖାଇ ବାନ୍ତି କରିବାର ଉପକ୍ରମ କରନ୍ତି । ମାଇଁ ସେତେବେଳେ କଲ୍ୟାଣୀର ପିଠି ଥାପୁଡ଼ାଇ କହୁଥିଲେ, 'ଇଏ କିଛି ନୁହଁ, କିଛିଦିନ ଶିଖିନେଲେ ସବୁ ଠିକ୍ ହୋଇଯିବ ।' କଲ୍ୟାଣୀ ତା' ଦେଶକୁ ଚିଠି ଲେଖିଲା–'ବାପା ମୋତେ ନେଇଯାଅ, ଏଠାରେ ମୋତେ ଖୁବ୍ କଷ୍ଟ ହେଉଛି ।' ଏହାର ଉତ୍ତରରେ ହରିନାରାୟଣ ଲେଖିଲେ–'ଘର ଓ ଜମିବାଡ଼ି ବିକ୍ରୟ ପାଇଁ ମୂଲ୍ୟ ନିର୍ଦ୍ଧାରଣ ହୋଇ ଅଗ୍ରିମ ନେଇସାରିଛି । ବିକ୍ରୟ ହେବା ପାଇଁ ଆଉ ଅଧିକ ସମୟ ଲାଗିବ ନାହିଁ । ତୋର ବଡ଼ମାମୁଙ୍କୁ କହିବୁ ବାସନ୍ତୀଦେବୀ କଲେଜଠାରୁ ଲେଡ଼ି ବ୍ରେବୋର୍ଣ୍ଣ କଲେଜ ଭଲହେବ, ସେଠାରେ ତୋର ନାମ ଲେଖାଇ ଦେବାର ବ୍ୟବସ୍ଥା କରିଦେବେ । ନନୀଗୋପାଳଙ୍କୁ ଦେବାପାଇଁ ଜ୍ୟୋତି ହାତରେ ଟଙ୍କା ପଠାଇଛି । ସେ ଯେପରି ତୋର ଓ ପରିମଳର ଖର୍ଚ୍ଚ ନେଇ ଚିନ୍ତା ନକରନ୍ତି । ଶରୀର ପ୍ରତି ଧ୍ୟାନ ଦେବୁ । ଆମେ ଶୀଘ୍ର ଯାଉଛୁ । ଇତି ତୋର ବାପା ।'

ଜ୍ୟୋତିପ୍ରକାଶର ଗୋଟାଏ ଚାକିରି ହେବାର ଥିଲା, ଏହି ହେଉଛି, ଏହି ହେବ କହି ନନୀଗୋପାଳ ତାକୁ ଅନେକଥର ଫେରାଇବା ପରେ ଦିନେ କହିଲେ–'ବୁଝିଲ

ହେ ଜ୍ୟୋତିବାବୁ, ହରିଭାଇ ଭାବୁଛନ୍ତି ବର୍ତ୍ତମାନ ବୋଧହୁଏ କଲିକତାରେ ଚାଉଳ ମହଣ ଦୁଇଟଙ୍କା, ଅଣାରେ ଦୁଇସେର ଘିଅ ମିଳୁଛି । ଦିନ ବଦଳୁଛି, ଚାରିଆଡ଼େ ଯେ କିପ୍ରକାର କମ୍ପିଟିସନ ତାହା ତ ନିଜେ ବୁଝିପାରୁଛ । ଆଜିକାଲି ଲାଞ୍ଚ ନଦେଲେ କେଉଁଠି କିଛି କାମ ହୁଏ ? ହରିଭାଇ ମଧ୍ୟ ଆଉ ଚିଠିପତ୍ର ଲେଖୁନାହାନ୍ତି । ଦେଖ କ'ଣ କରାଯିବ । ତୁମର ପିଉସା ତ ଖୁବ୍ ଭଲରେ ଅଛନ୍ତି, ତାଙ୍କ ନିକଟକୁ କାହିଁକି ଯାଉନାହଁ । କଲ୍ୟାଣୀର ମଧ୍ୟ ବାହାସାହା ହେବା ଦରକାର ।' ଏହାପରେ ଜ୍ୟୋତିପ୍ରକାଶ ପିଉସାଙ୍କ ପାଖକୁ ଗଲାନାହିଁ କିମ୍ୱା ଘରକୁ ଫେରିଲା ନାହିଁ । ମଝିରେ ମଝିରେ କଲ୍ୟାଣୀ ପାଖକୁ ସେ ଟଙ୍କାପାଇଁ ଆସେ । 'ଦୁଇଟା ଟଙ୍କା ଦେବୁ ?' କଲ୍ୟାଣୀ ଦେଇପାରେ ନାହିଁ କି ଏହିପରି ଏକ କୌତୁକପ୍ରିୟ ମଣିଷଟିର ମଳିନ ମୁହଁକୁ ଚାହିଁପାରେ ନାହିଁ । ପରିମଳ ମଧ୍ୟ ପୂର୍ବପରି ଭଉଣୀର ନିଜର ହୋଇ ନାହିଁ, ବରଂ ଶାନ୍ତି ସୁନୀତିଙ୍କ ସହିତ ତାର ସମ୍ପର୍କ ଅଧିକ ବଢ଼ିଯାଇଛି । କଲେଜରେ ମଧ୍ୟ କଲ୍ୟାଣୀ ନିଃସଙ୍ଗତା ଅନୁଭବ କରେ, ଆନନ୍ଦମୋହନ କଲେଜର ମଫସଲୀ ଛାତ୍ରଙ୍କ ପରି । ପଛ ବେଞ୍ଚରେ ବସି କଲିକତାରେ ସ୍ମାର୍ଟ ସ୍ମାର୍ଟ ଝିଅମାନଙ୍କୁ ଆଁ କରି ଚାହିଁରହେ । ଜ୍ୟୋତିଭାଇ ଯେପରି ତାରାକାନ୍ଦା ମୁକ୍ତାଗାଛାଠାରୁ ଆସିଥିବା ପିଲାମାନଙ୍କୁ 'ବଳଦ' ବୋଲି କହି ବ୍ୟଙ୍ଗକରେ, ଠିକ୍ ସେହିପରି ବ୍ରେବୋର୍ଣ୍ଣର ଝିଅମାନେ କଲ୍ୟାଣୀକୁ ପରିହାସ କରି କହନ୍ତି 'ବାଙ୍ଗାଲ' । କଲ୍ୟାଣୀ ନିଜକୁ ଖୁବ୍ ନିଃସଙ୍ଗ ମନେକରେ । ଘରେ ଶାନ୍ତି ସୁନୀତି ଯେତେବେଳେ ଆନନ୍ଦରେ ଗଳା ଫଟାଇ ଗୀତ ଗାଇବାରେ ଲାଗିଥାନ୍ତି, ସେତେବେଳେ ସେ ଏକା ଏକା ରୋଷେଇ ଘର ବସି ଆଳୁଦମ କିମ୍ୱା ହେଙ୍ଗୁଦିଆ ଡାଲି କରିବାରେ ଲାଗି ପଡ଼ିଥାଏ । ଘରର ସଭିଏଁ ସିନେମା ଦେଖିବାକୁ ଗଲେ କଲ୍ୟାଣୀକୁ ଏକାକୀ ଘର ଜଗିବା ପାଇଁ ପଡ଼ିଥାଏ । ତା'ର ନିଃସଙ୍ଗତା କେହି ଉପଲବ୍ଧି କରିପାରନ୍ତି ନାହିଁ । ରବିବାର ଦିନସାରା ଘରର ଅଳନ୍ଧୁ ଝାଡ଼ିବା, ତକିଆ ରେଜେଇ ଖରାରେ ପକାଇବା, ମଶାରି ବେଡ଼ସିଟ୍ ସଫାକରିବା, ଠାକୁର ଘର ଧୁଆଧୋଇ କରିବା, ରନ୍ଧାବଢ଼ା କାମ କରିବା ସମୟରେ କିମ୍ୱା ସପ୍ତାହର ବାକି ଛ'ଦିନ କଲେଜ ଛୁଟି ପରେ ଉତ୍ତପ୍ତ ମଧ୍ୟାହ୍ନର ପିଚୁତରଳା ଖରାରେ ଟ୍ରାମ ଅପେକ୍ଷାରେ ଛିଡ଼ା ହୋଇଥିବା ସମୟରେ ଯେତେବେଳେ ତୃଷ୍ଣା ଅନୁଭବ କରେ, ସେତେବେଳେ କଲ୍ୟାଣୀର ଦେଶକଥା ଖୁବ୍ ମନେପଡ଼େ । ଦେଶର ଜଳରେ ଯେଉଁ ସ୍ୱାଦ ଭରିରହିଛି କଲିକତାର କୌଣସି ଜଳରେ ସେ ତାହା ପାଏ ନାହିଁ ।

❑❑❑

## = ଦୁଇ =

କଲ୍ୟାଣୀ ଏୟାରପୋର୍ଟଟି ଦେଖେ ଆଉ ଆଶ୍ଚର୍ଯ୍ୟାନ୍ୱିତ ହୁଏ । ନୂଆ ଏୟାରପୋର୍ଟଟି ଖୁବ୍ ବଡ଼ ଓ ଚକ୍‌ଚକ୍ । ଦମ୍‌ଦମ୍‌କୁ କ'ଣ ଏହା ସହିତ ତୁଳନା କରାଯାଇ ପାରିବ ? ଢାକାର ତେଜଗାଁ ଏୟାରପୋର୍ଟରୁ ପ୍ଲେନ୍‌ରେ ଚଢ଼ି କଲ୍ୟାଣୀ ଥରେ ମାଉସୀଝିଅ ଭଉଣୀର ବାହାଘରକୁ ଚଟ୍ଟୋଗ୍ରାମ ଯାଇଥିଲା, ସେତେବେଳେ ଏହି ଏୟାରପୋର୍ଟଟି ତାକୁ ଖୁବ୍ ବଡ଼ ମନେହୋଇଥିଲା । ଛୁଆବେଳର ଆଖିକୁ ହୁଏତ ଏପରି ମନେହେବା ସ୍ୱାଭାବିକ, ଯେଉଁ ପଡ଼ିଆ ଦେଖି ଏକ ସମୟରେ ପୃଥିବୀର ସବୁଠାରୁ ବଡ଼ି ପଡ଼ିଆ ବୋଲି ମନେ କରାଯାଇଥାଏ ପରବର୍ତ୍ତୀ କାଳରେ ତାହା ଖୁବ୍ କ୍ଷୁଦ୍ର ମନେହୁଏ । ଇମିଗ୍ରେସନ ଓ କଷ୍ଟମ୍‌ସ ପାର ହୋଇ କଲ୍ୟାଣୀ ଯେତେବେଳେ ବାହାରେ ଆସି ଛିଡ଼ାହୁଏ, ସେ ବିଶ୍ୱାସ କରିପାରେନା ତା'ର ତିରିଶ ବର୍ଷର ସ୍ୱପ୍ନ ବାସ୍ତବରେ ଆଜି ସଫଳ ହୋଇଛି । କଲ୍ୟାଣୀ ପରମ ଶାନ୍ତିରେ ନିଶ୍ୱାସ ତ୍ୟାଗ କରେ, ଯେପରି ସେ ଦୀର୍ଘ ତିରିଶ ବର୍ଷକାଳ କୌଣସି ଏକ ସନ୍ତସନ୍ତିଆ ଅନ୍ଧକାର ଘର ଭିତରେ ଅଣନିଶ୍ୱାସୀ ହୋଇ ପଡ଼ିରହିଥିଲା । ଦୀପେନକୁ କୁହେ—'ବାବା ! ମନଭରି ନିଶ୍ୱାସ ନେ । ଏତେ ଫ୍ରେସ୍ ଏୟାର କଲିକତାରେ ପାଇବୁ ନାହିଁ ।'

ତିଳଜଳାସ୍ଥ ଘର ନିକଟରେ କୌଣସି ଗଛବୃଚ୍ଛ ନଥିଲା । ସାମାନ୍ୟ ଟିକିଏ ସବୁଜିମାର ସ୍ପର୍ଶ ପାଇଁ ତାକୁ ଗୋବରା ଜଳାଶୟ ନିକଟକୁ ଯିବାକୁ ପଡୁଥିଲା, ଶଶିକାନ୍ତଙ୍କ ଘର ଅଗଣାରେ ଯେପରି ବଡ଼ ବଡ଼ ବୃକ୍ଷ ଥିଲା, ଠିକ୍ ସେହିପରି ଅସଂଖ୍ୟ ବୃକ୍ଷରେ ସ୍ଥାନଟି ଭରି ରହିଥିଲା । ହଠାତ୍ ତା' ଆଖି ଆଗରେ ଭାସିଉଠେ ଟୋପି ପଞ୍ଜାବି ପିନ୍ଧା ଲୋକମାନେ ଖଟିଆ କାନ୍ଧେଇ ଧୂପର ବାସ୍ନା ବିତରଣ କରି କରି ନିକଟସ୍ଥ କବରସ୍ଥାନ ଅଭିମୁଖେ ଯାତ୍ରା କରୁଛନ୍ତି । ଏହି ଦୃଶ୍ୟ ଦେଖି ତା'ର ମନେପଡ଼ିଯାଏ, ଶରିଫାର ବାପା ମରିଯିବା ସମୟରେ ଏହିପରି ଏକ ଖଟିଆ ତାଙ୍କୁ ନେବାପାଇଁ ଆସିଥିଲା । ଜନୈକ ବୃଦ୍ଧ ଶରିଫାର ବାପାଙ୍କ ଶବ ଉପରେ ନଇଁପଡ଼ି ଶୁଆପରି କହି ଚାଲିଥିଲେ—'ଲାଇଲାହା

ଇଲ୍ଲାଲଲାହା ମୁହାମ୍ମାଦୁର ରାସୁଲୁଲ୍ଲାହ ।' ଗୋବରାକୁ ଖଟିଆ ଗଲେ ମହୁମାଛିର ଗୁଞ୍ଜନ ପରି ଲାଇଲାହା ଶବ୍ଦ ସହ କଲ୍ୟାଣୀ ଆଖି ଆଗରେ ଭାସିଉଠେ ଶରିଫାର ନିର୍ବାକ୍ ଚାହାଣି, ଖଟିଆ କାନ୍ଧରେ ବହନ କରି ଆନିସ, ବୁଲବୁଲ, କବୀରଙ୍କର ଗୁଲକିବାଡ଼ି କବରସ୍ଥାନ ଅଭିମୁଖେ ଚାଲିଯାଉଥିବାର ଦୃଶ୍ୟ । ସତେ ଯେପରି ସେ ବିଷଣ୍ଣ ବଦନରେ ସେମାନଙ୍କ କାଳିବାଡ଼ିସ୍ଥିତ ଘରଟିର ଜାମୁଗଛ ମୂଳେ ଛିଡ଼ାହୋଇ ଏହି ଦୃଶ୍ୟ ଦେଖୁଛି । ସେ ଯେ କଲିକତାରେ, ସେ ଯେ ଗୋବରାରେ ଏକ ନିଃସଙ୍ଗ ମଣିଷ, ତିଳଜଳାର ସନ୍ତସନ୍ତିଆ ପରିବେଶରୁ ପଳାଇ ଆସିଛି ସବୁଜିମା ଉପଭୋଗ କରିବାପାଇଁ, ମୁକ୍ତ ପବନ ଟିକିଏ ପାଇବା ପାଇଁ, ସାମାନ୍ୟ ଥଣ୍ଡା ମୁକ୍ତ ପବନ—ପୁନର୍ବାର ଯେ ତାକୁ ସେହି ମିଞ୍ଜି ମିଞ୍ଜି ଆଲୁଅ ଥିବା ଘରକୁ ଫେରିଯିବାକୁ ପଡ଼ିବ—ଏକଥା ସେ ଭୁଲିଯିବାକୁ ବସିଛି । ଏହା ପୂର୍ବରୁ କଲ୍ୟାଣୀ କେବେ ନନୀଗୋପାଳଙ୍କୁ ଦେଖି ନଥିଲା, କେବଳ ନାମଟି ମାତ୍ର ଶୁଣିଥିଲା । ସରଳାବାଳା କହିଥିଲେ ତାଙ୍କର ସାନଭାଇ ସିଭିଲ ସପ୍ଲାଇରେ କାର୍ଯ୍ୟକରିବା ପାଇଁ ଦେଶ ବିଭାଜନ ପୂର୍ବରୁ କଲିକତା ଚାଲିଯାଇଛନ୍ତି । ସେଠାରେ କିଛିଦିନ ଚନ୍ଦନ ନଗରଠାରେ, କିଛିଦିନ ମାନକୁଣ୍ଡୁଠାରେ ଅତିବାହିତ କରିବା ପରେ ବୈବାହିକ ବନ୍ଧନ ସୂତ୍ରରେ ଆବଦ୍ଧ ହୋଇ ସଂସାରୀ ସାଜିଛନ୍ତି । ତିଳଜଳାଠାରେ ଜମିକିଣି ଘର କରିଛନ୍ତି । କଲ୍ୟାଣୀ ଯେତେବେଳେ ସେ ନଦେଖିଥିବା ମାମୁଙ୍କ ସମ୍ପର୍କରେ ଗଳ୍ପଶୁଣେ, ସେ ମନେକରେ ଏସବୁ ତା'ର ଅତି ନିକଟରେ, ଯେପରିକି ତିଳଜଳାକୁ ହାତ ବଢ଼ାଇଲେ ପାଇଯିବ, ଇଚ୍ଛାକଲେ ମାମୁଙ୍କ କୋଳରେ ବସିପଡ଼ିବ, ଦେଖାହେଲେ ମାମୁ ତାକୁ ପାହାଡ଼ ଦେଖାଇ ନେଇଯିବେ । ଅପରାହ୍ଣରେ କାଳିବାଡ଼ି ଘର ଛାତ ଉପରକୁ ଯାଇ ଛିଡ଼ାହେଲେ ନଦୀର ଅପରପାର୍ଶ୍ୱର ଆକାଶରେ କଳା କଳା ଛାଇ ଦେଖିବାକୁ ପାଇଥାଏ । ଜ୍ୟୋତିପ୍ରକାଶ କୁହେ—ଏହି ସେ ଅସ୍ପଷ୍ଟ ଗାରୋ ପାହାଡ଼ ଦେଖାଯାଉଛି । ବ୍ରହ୍ମପୁତ୍ର ପାରହୋଇ ସେ ଦିନେ ଏହି ପାହାଡ଼ ନିକଟକୁ ଯିବବୋଲି ମନେ ମନେ ଭାବେ । ଜ୍ୟୋତିପ୍ରକାଶକୁ କହିଥିଲା—'ଚାଲ ନୌକାକରି ସେ ପାରିକୁ ଯାଇ ଦୌଡ଼ିକରି ପାହାଡ଼ଟାକୁ ଛୁଇଁ ଫେରି ଆସିବା ।' ଏହାଶୁଣି ଜ୍ୟୋତିପ୍ରକାଶ କହିଥିଲା—'ଦୁର ବୋକା, କାହିଁ କେତେ ଦୂରରେ ସେହି ପାହାଡ଼, ଶମ୍ଭୁଗଞ୍ଜ, ତାରାକାନ୍ଦା, ଫୁଲପୁର ତା'ପରେ କଂଶନଦୀ, କଂଶ ପାରହେଲେ ହାଲୁୟାଘାଟ, ଜୟରାମକୁରା, ତା'ପରେ ପାହାଡ଼, ପାହାଡ଼ର ଅପରପାର୍ଶ୍ୱରେ ମେଘାଳୟ ।' ଏତେ ଦୂରରେ ଥିବା ପାହାଡ଼କୁ କଲ୍ୟାଣୀ କାହିଁକି ଏତେ ନିକଟସ୍ଥ ବୋଲି ମନେକରେ, ଏହା ଭାବି ସେ ଅବାକ୍ ହୋଇଯାଏ । ତିଳଜଳାକୁ ଆସିବାପରେ ମନରେ ଭାବି ନେଇଥିବା ନିକଟ ଆତ୍ମୀୟ ମଣିଷମାନେ

ଯେତେବେଳେ ଖୁବ୍ ଦୂରମଣିଷ ପରି ମନେହେଲେ, ସେତେବେଳେ ଜ୍ୟୋତିଭାଇର କଥା ତା'ର ମନେ ପଡ଼ିଯାଏ—'ବୋକା ? ଦୂରର ପଦାର୍ଥକୁ ଚାହିଁଲେ କ'ଣ ଛୁଇଁହୁଏ ?'

ଏକଚାଳିରେ ଟାଇଲି ଛପର ହୋଇଥିବା କେତୋଟି ଘର ଥିଲା । ଅସରାଏ କି ଦୁଇ ଅସରା ବର୍ଷା ହୋଇଗଲେ ସେଠାରେ ଏପରି କାଦୁଅ ହୋଇଯାଏ ଅଗଣାରେ ଇଟା ପକାଇ ଯିବାଆସିବା କରିବାକୁ ପଡ଼ିଥାଏ । କଲ୍ୟାଣୀ କାଦୁଅକୁ 'ପ୍ୟାକ୍' କହିଥାଏ ବୋଲି ଶାନ୍ତି ସୁନୀତି ଯେ ହସନ୍ତି ତା' ନୁହେଁ, ମାଈଁ ମଧ୍ୟ ହସିଥାନ୍ତି । ତାକୁ ଶୁଣାଇଲା ଭଳି କହିଥାନ୍ତି—'ହଂସ ଡାକେ ପ୍ୟାଙ୍କ ପ୍ୟାଙ୍କ ।' ଏମାନେ ଉଚ୍ଚାରଣଗତ ତ୍ରୁଟିକୁ ଏତେ ଧରନ୍ତି ଯେ କଲ୍ୟାଣୀ କଥା କହିବାକୁ ଲଜ୍ଜାବୋଧ କରେ । ଏଠାରେ ବଞ୍ଚି ରହିବାକୁ ହେଲେ ସେମାନଙ୍କ ପରି ତାକୁ ମଧ୍ୟ କଥାବାର୍ତ୍ତାରେ ଅଭ୍ୟସ୍ତ ହେବାକୁ ପଡ଼ିବ, ତାହା ସେ ସ୍ପଷ୍ଟଭାବେ ବୁଝିପାରିଥିଲା । ଘରେ ଓ ଘର ବାହାରେ ତା' ମୁହଁରୁ ବାହାରୁଥିବା 'ଆଇଛିଲାମ ଗେଛିଲାମ' ଶବ୍ଦକୁ କେନ୍ଦ୍ରକରି ତାକୁ କମ୍ ଅପଦସ୍ଥ ହେବାକୁ ପଡ଼ିନାହିଁ । ସେ ଚୋରକୁ ଚୁର, କଟାରିକୁ ଦାଆ, ଘରକୁ ବସା କହୁଥିବାରୁ ଅବସର ସମୟରେ ଏହି ସମସ୍ତ ଶବ୍ଦ ସେମାନଙ୍କ ପାଇଁ ହାସ୍ୟରସର ଖୋରାକ ଥିଲା । କଲ୍ୟାଣୀ ଓ ପରିମଳ ଯେଉଁ ଘରେ ଖଟ ଉପରେ ଶୋଉଥିଲେ, ସେହି ଘରେ ଆଉ ଗୋଟିଏ ବେଞ୍ଚ ମଧ୍ୟ ପଡ଼ି ରହିଥିଲା । ସେହି ବେଞ୍ଚ ଉପରେ କେତେବେଳେ ସୌମିତ୍ର ତ ପୁଣି କେବେ ତା'ର ବୁଢ଼ୀମା ଶୋଉଥିଲେ । ସୌମିତ୍ର ଦିନରେ ଲେକ୍‌ମାର୍କେଟସ୍ଥିତ ଦୋକାନରେ ବସେ, ରାତିରେ ନାଇଟ୍ କଲେଜରେ ଲ' ପଢ଼େ । ଅବଶ୍ୟ ଶାନ୍ତି ସୁନୀତିଙ୍କ ପରି ସେ କଲ୍ୟାଣୀକୁ ନେଇ ପରିହାସ କରି ନାଚେ ନାହିଁ । ପ୍ୟାଙ୍କ ପ୍ୟାଙ୍କ କହି ହସେ ନାହିଁ । କମ୍ କଥା କୁହେ । କଲ୍ୟାଣୀକୁ ଥରେ ପଚାରିଥିଲା—'ତୁମ ଦେଶର ସଭିଏଁ ତ ଉର୍ଦ୍ଦୁ କହନ୍ତି, ଏହା ଠିକ୍ ନା ?'

କଲ୍ୟାଣୀ କହିଥିଲା—ପଶ୍ଚିମ ପାକିସ୍ଥାନର ଲୋକମାନେ କୁହନ୍ତି ।

—ଆଉ ଇଷ୍ଟର ନନ୍-ବେଙ୍ଗଲୀମାନେ ?

—ଇଷ୍ଟରେ ନନ୍-ବେଙ୍ଗଲୀ ବା ଆସିବେ କୁଆଡୁ ?

—ଆଇ ମିନ୍ ମୁସଲମାନମାନେ ?

—ଏମାନେ ଉର୍ଦ୍ଦୁ କହିବେ କାହିଁକି ? ଏମାନେ ତ ବଙ୍ଗାଳୀ !

—ବଙ୍ଗାଳୀ ? ସୌମିତ୍ର ଯେପରି ଏକ ଅସମ୍ଭବ ସମ୍ବାଦ ଶୁଣୁଛି ସେହିପରି ମୁଖଭଙ୍ଗୀ କରି ଚାହିଁରହିଥିଲା ।

ଶାନ୍ତଶିଷ୍ଟ ମନେ ହୋଇଥିବା ଏହି ପିଲାଟି, ହଠାତ୍ ଦିନେ ରାତିରେ ନିଦରୁ ଉଠି କଲ୍ୟାଣୀ ଦେଖିଲା, ତା' ଦେହରେ ହାତ ବୁଲାଉଛି, ସେ ବେଗି ଉଠି ଆସିବାକୁ ଚେଷ୍ଟା କରିବାରୁ ସୌମିତ୍ର ତାକୁ ଘନିଷ୍ଠ ଭାବରେ ଜାବୁଡ଼ି ଧରିବାପାଇଁ ଚେଷ୍ଟା କଲା, ପେଟିକୋଟର ଫିତା ଧରି ଟାଣିଦେଲା, ଆତଙ୍କରେ କଲ୍ୟାଣୀ କଣ୍ଠରୁ କୌଣସି ଶବ୍ଦ ବାହାରିଲା ନାହିଁ । ସେ ନିଜର ଦୁଇହାତର ସମସ୍ତ ଶକ୍ତି ପ୍ରୟୋଗ କରି ସୌମିତ୍ରଠାରୁ ମୁକ୍ତି ଲାଭକରି ପରିମଳ ଦିଗକୁ ଗଡ଼ିଗଲା, ତା'ର ଶ୍ୱାସର ଗତି ଦ୍ରୁତ ହୋଇଯାଇଥିଲା । ଯେଉଁ ଝିଁ ଝିଁ କରୁଥିବା ନିଝୁମ ରାତିରେ ତା'ର ମାମୁପୁଅ ଭାଇ ତା' ଉପରେ ଝାମ୍ପି ପଡ଼ିଥିଲା, ସେହି ରାତିପାହି ସକାଳ ହେଲା, କୁଆ ଡାକିଲା, ସୂର୍ଯ୍ୟ ଉଦୟ ହେଲା, ସମସ୍ତେ ନିଜ ନିଜ କାର୍ଯ୍ୟରେ ବାହାରିଗଲେ, ଏହି ସମୟରେ ଡାକପିଅନ ସରଳାବାଳାଙ୍କ ଚିଠି ଦେଇଗଲା । ଚିଠିରେ ଲେଖାଥିଲା–''ମା କଲ୍ୟାଣୀ, ଆଶା କରେ ଭଲରେ ଅଛୁ । ମାମୁଘରକୁ ନିଜ ଘର ମନେ କରି ରହିବୁ । ଯାହା ଖାଇବାକୁ ଇଚ୍ଛା କରିବୁ ଖାଇବୁ । ଲଜ୍ଜା କରିବୁ ନାହିଁ । ତୋର ବାପା ନିୟମିତ ଭାବେ ନନୀଗୋପାଳଙ୍କ ନିକଟକୁ ଟଙ୍କା ପଠାଉଛନ୍ତି, ତୁମର ଭବିଷ୍ୟତରେ ଯେପରି କୌଣସି ଅସୁବିଧା ନହୁଏ ସେଥିପାଇଁ ସେ ସର୍ବଦା ଚେଷ୍ଟା କରୁଛନ୍ତି । ନିରାପତ୍ତା ପାଇଁ ତୁମମାନଙ୍କୁ କଲିକତା ପଠାଇଛନ୍ତି, ବିଶେଷକରି ତୋର ନିରାପତ୍ତା ପାଇଁ । ଝିଅ ବଡ଼ ହୋଇଗଲେ ବାପ-ମା'ଙ୍କର ଦୁଶ୍ଚିନ୍ତା କିପରି ବଢ଼ିଯାଏ, ତୁ ଯେତେବେଳେ ମା' ହେବୁ ବୁଝିବୁ । ମନ ଦେଇ ପଢ଼ାଲେଖା କରିବୁ । ତୁମେମାନେ ନିରାପଦରେ ଅଛ ଏହି କଥା ଭାବି ମୁଁ ଶାନ୍ତିପାଏ । ନନୀକୁ ଚିଠି ଲେଖିବାପାଇଁ କହିବୁ । ପରିମଳ ପ୍ରତି ନଜର ଦେଉଥିବୁ । ଅନେକ ଦିନ ହେବ ତୋର ଚିଠି ପାଇ ନାହିଁ, ଚିଠି ଦେବୁ । ମନ ଖରାପହେଲେ ଶାନ୍ତି ସୁନୀତିଙ୍କ ସହ ବାହାରକୁ ବୁଲିଯିବୁ । ଜ୍ୟୋତିର କୌଣସି ଖବର ପାଇଲେ ଜଣାଇବୁ ।

ତୋର ବାପାଙ୍କର ପ୍ରେସର୍ ବଢ଼ିଯାଇଛି । ଡାୟବେଟିସ୍ ଥିବାର ଜଣାପଡ଼ିଛି । ଘର ବିକ୍ରିର କାର୍ଯ୍ୟ ବର୍ତ୍ତମାନ ପାଇଁ ସ୍ଥଗିତ ରହିଛି । ତୋର ବାପା ସୁସ୍ଥ ହେଲେ ଆମ୍ଭେମାନେ ଚାଲିଯିବୁ । ଆମପାଇଁ ଚିନ୍ତା କରିବୁ ନାହିଁ ।

ଇତି ତୋର ମା' ।''

ଚିଠିଟି ମାତ୍ର ଥରେ ପଢ଼ି ଟୁକୁରା ଟୁକୁରା କରି ଚିରି ପକାଇଲା କଲ୍ୟାଣୀ । ଚିଠିରେ ଲେଖାଥିବା 'ନିରାପତ୍ତା' ଶବ୍ଦଟି ତାକୁ ଖୁବ୍ ବ୍ୟଥିତ କଲା । ଜନ୍ମମାଟି ଛାଡ଼ି, ନିଜର ଚଉଦ ପୁରୁଷର ଭିଟାମାଟି ଛାଡ଼ି, ଏକ ଅଦ୍ଭୁତ ଅଚିହ୍ନା ଦେଶରେ ଉଦ୍‌ବାସ୍ତୁ

ହୋଇ ସେ କି ନିରାପତ୍ତା ପାଇଛି—ଆଜି ଯଦି ଜିଲ୍ଲା ମାଜିଷ୍ଟ୍ରେଟ ହରିନାରାୟଣ ରାୟ ଏବଂ ତାଙ୍କ ସ୍ତ୍ରୀ ସରଳାବାଳା ଦେବୀଙ୍କୁ ସେ ଏହି ପ୍ରଶ୍ନକରେ ? କି ଜବାବ ଦେବେ ସେମାନେ ଯଦି ସେ ଜଣାଇଦିଏ ତିଳଜଳାରେ କିପରି ତିଳ ତିଳ କରି ବୋବା, କାଲପରି ତା'ର ଜୀବନ ଅତିବାହିତ କରିବାର କାହାଣୀ ? ଯେଉଁ କଲ୍ୟାଣୀ ରୋହି, ଭାକୁଡ଼, ଇଲିଶିମାଛ ନହେଲେ ଖାଇବସିଲା ବେଳେ ଘୃଣାରେ ମୁହଁ ବୁଲାଇ ନେଉଥିଲା ସେ ବର୍ତ୍ତମାନ ଅତି ଛୋଟ ଚିଙ୍ଗୁଡ଼ିମାଛ ଲଗାଇ ଭାତ ଖାଇବାରେ କୌଣସି ଆପତ୍ତି କରୁନାହିଁ । ତେବେ କି ପ୍ରକାର ନିରାପତ୍ତା କଲ୍ୟାଣୀ ପାଇଛି—ଯଦି ବିଧର୍ମୀ ମୁସଲମାନ ଯୁବକର ଧର୍ଷଣରୁ ରକ୍ଷା ପାଇବା ପାଇଁ ଭିନ୍ନ ଏକ ସହରର ଅନ୍ଧକାର ଗଳି ମଧ୍ୟରେ ନିଜର ଆତ୍ମୀୟ ଦ୍ୱାରା ଧର୍ଷିତା ହେବାକୁ ହୁଏ !

ତା' ନାମରେ ଦେଶରୁ ଆସୁଥିବା ସମସ୍ତ ଚିଠି କଲ୍ୟାଣୀ ହାତକୁ ଆସେ ନାହିଁ । ହରିନାରାୟଣ ଖଣ୍ଡିଏ ଚିଠିରେ ଉଲ୍ଲେଖ କରିଥିଲେ, 'ପାଞ୍ଚଖଣ୍ଡି ଚିଠି ଲେଖିଲେ ମଧ୍ୟ ତୋ'ଠାରୁ କୌଣସି ଉତ୍ତର ମିଳିଲାନାହିଁ ।' ଏହି ପାଞ୍ଚୋଟି ଚିଠି ମଧ୍ୟରୁ ସେ ହୁଏତ ଖଣ୍ଡିଏ ଚିଠି ପାଇଛି । ଦିନେ ସୌମିତ୍ରର ସାର୍ଟ ଧୋଇବାକୁ ଯାଇ ଛାତି ପକେଟରୁ ବାଦଲର ଖଣ୍ଡିଏ ଚିଠି ପାଇଥିଲା । ଖଣ୍ଡିଏ ଚିଠିକୁ ଅପେକ୍ଷା କରି ସେ କେତେ ଦୁଃସହ ଭାବେ ଦିନ ରାତି ବିତାଇଛି, ତାହା ସେ ଜାଣେ । ବାଦଲ ଆଜି ମଧ୍ୟ ତାକୁ ମନେରଖିଛି, ଆଜି ମଧ୍ୟ ସେ ଏକା ଏକା ବ୍ରହ୍ମପୁତ୍ର କୂଳରେ ବସିରୁହେ, ତା' ସାମ୍ନାରେ ଡଙ୍ଗିଗୁଡ଼ିକ ଦୋହଲି ଦୋହଲି ଭାସିଯାଏ, ଆଉ ସିଏ ତା'ର ସ୍ମୃତିଗୁଡ଼ିକୁ ଆଖି ଜଳରେ ଧୋଇ ହୃଦୟ କୋରଡ଼ରେ ସାଇତି ରଖେ । ଗାଧୁଆଘରେ ଛିଡ଼ାହୋଇ ଚିଠିଟିକୁ ପଢୁ ପଢୁ କଲ୍ୟାଣୀର ଅନ୍ତରରୁ କରୁଣ କାନ୍ଦଣା ଝରିଆସେ । କାନ୍ଦଣାର ଶବ୍ଦ ପରିବାର ମଧ୍ୟରେ କାଳେ କୌଣସି ଅଘଟଣର ସୂତ୍ରପାତ କରିବ, ମନରେ ଏହି ଭୟରଖି ସେ କଳ ଖୋଲିଦିଏ ଯେପରି କଳ ପାଣିର ଝରଝର ଶବ୍ଦ ତାର କାନ୍ଦଣାର ଶବ୍ଦକୁ ଚପାଇ ଦେବ । ତିଳଜଳାର ଜୀବନ-ଧାରାକୁ ନିୟତିର ନିର୍ଦ୍ଦେଶ ବୋଲି ମାନି ନେଇ ସେ ତା'ର ଦେଶଛାଡ଼ି ଆସିଥିବା ସମସ୍ତ ସ୍ମୃତିକୁ ଭୁଲିଯିବାକୁ ଚେଷ୍ଟା କରେ । କଲ୍ୟାଣୀ ସେଠାରୁ ପଳାଇ ଯାଇପାରିବ ନାହିଁ ବୋଲି କ'ଣ ଯାଏ ନାହିଁ, ନା ଚରମ ଅନିଶ୍ଚୟତା ନିକଟରେ ତା'ର ହସ-ଆନନ୍ଦ, ସୁଖ-ସ୍ୱପ୍ନ ସମସ୍ତ କିଛି ବଳି ଦେଇ ବାପା-ମା'ଙ୍କୁ ନିଶ୍ଚିନ୍ତ କରିଛି !

ବିଚ୍ଛେଦର ଅଭିମାନରେ ସେ ଏତେ ବେଶି ଘାରି ହୋଇ ପଡ଼ିଥିଲା ଯେ ହରିନାରାୟଣ, ସରଳାବାଳା, ଶରିଫା, ମୁନ୍ନି, ଅନିଲକାକା, ବାଦଲ—କାହାରି ଚିଠିର

ଉତ୍ତର ସେ ଦେଉନଥିଲା । ଖୁବ୍ ହେଲେ ଭଲଅଛି ବୋଲି ଜଣାଇ ଦାୟମୁକ୍ତ ଚିଠିଲେଖି ନିଜକୁ ରକ୍ଷା କରିବାର ଚେଷ୍ଟା କରୁଥିଲା । ହଁ, ନିଜ ଶରୀରକୁ ରକ୍ଷା କରିବାର ଚେଷ୍ଟା— ଯେଉଁ ଶରୀରକୁ ରକ୍ଷା କରିବା ପାଇଁ ତାକୁ ତା'ର ପ୍ରିୟ ସହର, ପ୍ରିୟ ନଦୀକୂଳରୁ ଅପସାରିତ କରାଗଲା—ସେହି ଶରୀରଟିକୁ ରକ୍ଷାକରିବା ତ ତାରି ଉଚିତ ।

ରାତି ରାତି ଉଜାଗର ରହି ସେ ଏକ ହେଟାବାଘର ଥାବାରୁ ନିଜକୁ ବଞ୍ଚାଇ ରଖେ । ପାଦରେ କୁଟାଖିଅଟେ ପଡ଼ିଲେ ମଧ୍ୟ ସେ ଚମକି ପଡ଼େ । ଲଜ୍ଜା-ବେଦନା-ଆଶଙ୍କା-ସଙ୍କୋଚରେ ସେ ଏତେ ଭୟଭୀତ ହୋଇପଡ଼ିଥାଏ ଯେ, ସେ ମନେକରେ ଆଜନ୍ମରୁ ସେ ପାପିନୀ, ପାପକୁ ନେଇ ଗଢ଼ିଉଠିଛି ତା'ର ଏହି ଶୂନ୍ୟ ଜୀବନ । ଜୁଳୁଜୁଳିଆ ପୋକ ପଛରେ ଦୌଡ଼ି ଦୌଡ଼ି ଯେଉଁ ଝିଅ ସମୟ ଅତିବାହିତ କରୁଥିଲା, ରାତି ହେଲେ ସେହି ଝିଅକୁ ବର୍ତ୍ତମାନ କଣ୍ଢାବୁଦା ମଧ୍ୟରେ ଆତ୍ମଗୋପନ କରିବାକୁ ପଡୁଛି । ସେ ଅନ୍ତର ମଧ୍ୟରେ ଏପରି ସନ୍ତ୍ରସ୍ତ ଅନୁଭବ କରୁଥିଲା ଯେ ଅନ୍ୟ କାହା ଆଡ଼କୁ ମୁହଁ ଟେକି ଚାହିଁପାରୁ ନଥିଲା । ଅନିର୍ବାଣ ତାକୁ ସେହି କ୍ଷୁଦ୍ର ସୀମିତ ନିଃସଙ୍ଗ ଜୀବନରୁ ହଠାତ୍ ଉଦ୍ଧାର କରେ । ଓଲଟଡ଼ାଙ୍ଗସ୍ଥିତ ପିଉସୀଙ୍କ ଘରେ ତା' ସହିତ ପ୍ରଥମ ସାକ୍ଷାତ ହୁଏ, ଠିକ୍ ପିଉସୀଙ୍କ ଘର ନୁହେଁ, ପିଉସୀ ତାଙ୍କ ନଣନ୍ଦଙ୍କ ଘରେ ରହୁଥିଲେ, ସେହି ନଣନ୍ଦଙ୍କ ଘରେ । ନଣନ୍ଦଙ୍କ ପୁଅ ନିମାଇ, ଅନିର୍ବାଣ ନିମାଇର ବନ୍ଧୁ, ଶ୍ୟାମଳ ବର୍ଣ୍ଣର ଶରୀର, ଆଖିରେ ହାଇପାୱାର ଚଷମା, ପାଖାପାଖି ଛ'ଫୁଟ ଲମ୍ବର ଶରୀର, ଖୁବ୍ ଅଧିକ ସିଗାରେଟ୍ ପିଏ—କଲ୍ୟାଣୀକୁ ଦେଖି ତା' ମୁହଁକୁ ନିଷ୍ପଲକ ଦୃଷ୍ଟିରେ ଚାହିଁରହିଥିଲା । ତୁମର ନାମ କ'ଣ, କେଉଁ କଲେଜରେ ପଢୁଛ, କେଉଁଠାରେ ରହୁଛ ଆଦି ପ୍ରଶ୍ନ କରିବା ପରେ କହିଲା—'ଆପଣ ଖୁବ୍ ଲଜ୍ଜାବତୀ ନତୁବା ସ୍ୱଳ୍ପଭାଷୀ ।' କଲ୍ୟାଣୀ କହିଥିଲା—'କାହିଁକି କୁହନ୍ତୁ ତ ।' ଅନିର୍ବାଣ ହସି ହସି କହିଥିଲା—'ଏଇ ଦେଖନ୍ତୁ, ଆପଣ କିନ୍ତୁ ଏପର୍ଯ୍ୟନ୍ତ ମୋର ନାମ ରାଘବ ବୋୟାଲ କି ନା, ମୁଁ ଘୋଡ଼ା ଘାସକଟା କାର୍ଯ୍ୟ କରେ କି ନା କିଛିହେଲେ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିନାହାନ୍ତି ।' ଏହାପରେ ଆତ୍ମପକ୍ଷ ସମର୍ଥନ କରି ଅନିର୍ବାଣ କହିଥିଲା— 'ମୋର ନାମ ଅନିର୍ବାଣ ଦାଶ, ଗଡ଼ିଆହାଟସ୍ଥ ବ୍ୟାଙ୍କରେ କାର୍ଯ୍ୟ କରେ ।' ଏହାର ଠିକ୍ ସାତଦିନ ପରେ କଲ୍ୟାଣୀ ଏକାକିନୀ ବସ୍‌ଷ୍ଟାଣ୍ଡରେ ବସିରହି ବସ୍ ଅପେକ୍ଷାରେ ଥିଲା, ଏହି ସମୟରେ ଖରାତାପରେ ଦଗ୍ଧ ଅନିର୍ବାଣ ଆସି ସେଠାରେ ପହଞ୍ଚିଲା, କଲ୍ୟାଣୀକୁ ଦେଖି ଖୁବ୍ ଆନନ୍ଦିତ ହେଲା । ପିଉସୀଙ୍କ ଘରକୁ ଆଉ ଯାଏ କି ନାହିଁ, ନିମାଇ କିପରି ଅଛି ଆଦି ସୌଜନ୍ୟମୂଳକ ପ୍ରଶ୍ନ ଶୀଘ୍ର ପଚାରିବା ପରେ ସେ କହିଥିଲା—'ସେଦିନ ଘରକୁ ଫେରିବା ପରେ ଆପଣଙ୍କ କଥା ଖୁବ୍ ମନେ ପଡ଼ିଲା ।' କଲ୍ୟାଣୀ କହିଲା—'ମୁଁ

ତ ସେପରି କିଛି କଥା କହିନାହିଁ ।’ ଅନିର୍ବାଣ ହସି ହସି କହିଲା—‘ଆପଣ ନକହିଥିବା କଥାଗୁଡ଼ାକ ।’ ଏହାପରଠାରୁ ଉଭୟଙ୍କର ଟ୍ରାମ, ବସ୍, ରାସ୍ତାରେ ସାକ୍ଷାତ ହୁଏ, ସେତେବେଳକୁ କଲ୍ୟାଣୀ ବାଙ୍ଗାଲ ଭାଷାକୁ ଅନେକ ପରିମାଣରେ ତ୍ୟାଗକରି ବଙ୍ଗଳା କହିବାରେ ଅଭ୍ୟସ୍ତ ହୋଇଯାଇଥିଲା । ସାକ୍ଷାତ ହେଲେ ଅନିର୍ବାଣ ସହ ଅନର୍ଗଳ ଭାବେ କଥା କୁହେ । ଅନିର୍ବାଣ ପ୍ରାୟ ଭୁଲିଯାଏ ଯେ କଲ୍ୟାଣୀ ପଶ୍ଚିମବଙ୍ଗର କନ୍ୟା ନୁହେଁ । ଦିନେ କଲ୍ୟାଣୀକୁ ସେ କେଉଁଠାରେ ହେଲେ ବସିବା ପାଇଁ କହି ଭିକ୍ଟୋରିଆ ମେମୋରିଆଲ୍‌କୁ ନେଇଗଲା । ନିରୋଳା ଦେଖି ବସି କହିଲା—‘ଜୀବନ ଖୁବ୍ ଛୋଟ, ନା କଲ୍ୟାଣୀ ?’

କଲ୍ୟାଣୀ ଦୀର୍ଘଶ୍ୱାସ ତ୍ୟାଗ କରି କହିଥିଲା—‘ମୋ ପାଇଁ କିନ୍ତୁ ଜୀବନ ଖୁବ୍ ଦୀର୍ଘ ମନେହୁଏ, ଯେପରି ତାହା ସରିବାର ନୁହେଁ । ଦିନଗୁଡ଼ିକ ଯେପରି ସରୁନାହିଁ । କୌଣସିମତେ ଏହି ଜୀବନଟା ଶେଷ ହୋଇଗଲେ ରକ୍ଷା ମିଳିବ ।’

—କ’ଣ କହୁଛ, ତୁମେ ତ ହତାଶା ଭୋଗ କରୁଛ ।

କଲ୍ୟାଣୀ ମ୍ଳାନ ହସେ ।

ଅନିର୍ବାଣ ଦିନେ କହିଲା—ଚାଲ ସିନେମା ଦେଖିବାକୁ ଯିବା ।

ସେପର୍ଯ୍ୟନ୍ତ କଲ୍ୟାଣୀ କଲିକତାର କୌଣସି ସିନେମା ହଲ୍‌କୁ ଯାଇନଥିଲା । ଶାନ୍ତି ସୁନୀତି ରାତି ଅଧଯାଏ ସିନେମା ଗପ କରନ୍ତି, କଲ୍ୟାଣୀ ଏହି ଗଳ୍ପରୁ କେତେକାଂଶ ବୁଝିଲେ ମଧ୍ୟ ଅନ୍ୟ କେତେକ ବୁଝିପାରେ ନାହିଁ । କୌଣସି ଏକ ରବିବାର ଦିନ ମୌଲାଲି ଛକରେ ବସ୍‌ରୁ ଓହ୍ଲାଇ ଗୋଟିଏ ରେସ୍ତୋରାଁ ଭିତରେ ଦୁଇଜଣଯାକ ବସିଲେ । ଅନିର୍ବାଣ ଅର୍ଡ଼ର ଦେଲା ବ୍ରେଷ୍ଟ କାଟଲେଟ୍ । କଲ୍ୟାଣୀ ବୁଝିପାରିଲା ନାହିଁ ଏହା କି ପଦାର୍ଥ ? ଖାଇବାକୁ ଯିବା ସମୟରେ ସେ ଦ୍ୱନ୍ଦ୍ୱରେ ପଡ଼ିଗଲା । ଅନିର୍ବାଣ ହସି ହସି କହିଲା—‘ଏହି କାଟଲେଟ ଭାଜିଲେ ବାଦାମୀରଙ୍ଗ ଧାରଣ କରେ, ବୁଝିଲ ! ବ୍ରେଇଜଡ଼ କାଟଲେଟ ।’ ନିଜର କାଟଲେଟରୁ ଖଣ୍ଡିଏ କଲ୍ୟାଣୀର ପାଟିରେ ଦେଇ ସେ କହିଲା—‘ଭଲପାଇବାକୁ ଶେଷରେ ରାସ୍ତାରୁ ଗୋଟାଇ ନେବାକୁ ପଡ଼ିଲା, କ’ଣ କହୁଛ ?’

—ରାସ୍ତାରୁ ? ନା ନିମାଇଙ୍କ ଘରୁ ?

—ସେ ଏକା କଥା ।

—ଛିଡ଼ାଇ ଫୋପାଡ଼ି ଦିଆଯାଇ ବି ପାରେ ।

ଏ ସମସ୍ତ ଫୋପଡ଼ାଫୋପଡ଼ି ମଧ୍ୟରେ ମୁଁ ନାହିଁ । ଯାହା କିଛି ପାଇଛି ସେତକରେ ହିଁ ମୋର ମନଖୁସି ।

କଲ୍ୟାଣୀକୁ ଖୁବ୍ ଭଲ ଲାଗିଥିଲା ଦେଖିବାକୁ ଉଦାସ ପ୍ରକୃତିର ଏହି ସରଳ ପିଲାଟିକୁ । ସେଦିନ ପ୍ରାଚୀରେ ପାଖାପାଖି ବସି ସିନେମା ଦେଖିଥିଲେ । ହଲଟି ଭିତରେ ଅନ୍ଧକାର ହେଲେ ଅନିର୍ବାଣ ତା'ର ସରୁ ସରୁ ଆଙ୍ଗୁଳି ଉପରେ ଯେତେବେଳେ ହାତ ରଖୁଥିଲା, ସେତେବେଳେ ତା'ର ମନେ ହୋଇଥିଲା ସ୍ୱପ୍ନକୁ ଦୂରେଇ ଦେଲେ ତାହା ଝାପ୍‌ସା ହୋଇଯାଏ, ଏଣୁ ନିକଟସ୍ଥ ହୋଇ ତା' ମଧ୍ୟରେ କିଛିଟା ସୁଖାନୁଭୂତି ହେଉ ।

ଅନିର୍ବାଣକୁ ଭୁଲିବାର କୌଣସି ଉପାୟ ନଥିଲା । ଦିନେ କହିଲା, 'ଆଜି ବ୍ୟାଙ୍କ ହଲିଡ଼େ, ଚାଲ ଗଡ଼ିୟା ଯିବା ।' ଗଡ଼ିୟାଠାରୁ ଜୟନଗର-ମଜିଲପୁର ବସ୍‌ରେ ବସି ଅନିର୍ବାଣ ବାଟ ସାରା ପ୍ରେମରେ ପଡ଼ିଲେ କିପରି ମନ ଉଡ଼ିବୁଲେ, କାମରେ ମନ ଲାଗେନାହିଁ, ଗଣନା ବାରମ୍ବାର ଭୁଲ ହୋଇଯାଏ ଏହି ସମସ୍ତ କଥା କହି ଚାଲିଥିଲା । ଜୟନଗରର ଅପେରା ହାଉସ ବୁଲି ଦେଖିବା ସମୟରେ କଲ୍ୟାଣୀର ସ୍ମୃତିପଟରେ ମୁକ୍ତାଗାଛାର ଜମିଦାର ଜୀବନକୃଷ୍ଣ ଆଚାର୍ଯ୍ୟଙ୍କ ନାଟ ମନ୍ଦିରର ସ୍ମୃତି ଉଭାସିତ ହୋଇଉଠିଲା । ଜ୍ୟୋତିପ୍ରକାଶ କହିଥିଲା—ଏହି ଯେଉଁ ଘୂର୍ଣ୍ଣାୟମାନ ଷ୍ଟେଜ ଦେଖୁଛୁ ପୂର୍ବେ ଏହିଠାରେ ନୃତ୍ୟ ହେଉଥିଲା । ନାଟକ ଅଭିନୀତ ହେଉଥିଲା । ଜମିଦାରମାନେ ଗୋଡ଼ ଉପରେ ଗୋଡ଼ ପକାଇ ବସି ନାଟକ ଦେଖୁଥିଲେ ।

କଲ୍ୟାଣୀ ନିଜେ ଜାଣିପାରିଲା ନାହିଁ ହଠାତ୍ କାହିଁକି ଦିନେ ଅନିର୍ବାଣ ତାକୁ କିଛି ନଜଣାଇ କହି ପକାଇଲା, ''ଚାଲ କୋର୍ଟକୁ ଯାଇ ବାହାହୋଇ ପଡ଼ିବା ।'' ତେବେ କାହିଁକି ?—ସେ କ'ଣ ଦେଖିବାକୁ ଗୋରୀ ବୋଲି, ତା'ର ଶରୀରର ଗଠନ କ'ଣ ଦେଖିବାକୁ ସୁନ୍ଦର ବୋଲି କିମ୍ବା ସେ ସିଧାସଳଖ କଥା କୁହେ ବୋଲି, ନା ତା' ମନ ମଧ୍ୟରେ କୌଣସି କୁଟିଳତା ନାହିଁ ବୋଲି ।

ବାହାଘର ଶବ୍ଦଟା ଶୁଣି କଲ୍ୟାଣୀ ମନରେ ଏକ ଧୂଳିଝଡ଼ ବହିଯାଏ । ଯେପରି ଝଡ଼ରେ ଗଛର ଶାଖାପ୍ରଶାଖା ଭାଙ୍ଗି ବିପର୍ଯ୍ୟସ୍ତ ହୋଇଯାଏ ସେହିପରି ତା' ମନର ଭାବନା ସବୁ ଓଲଟପାଲଟ ହୋଇଗଲା । ଏ ସମସ୍ତ ସତ୍ତ୍ୱେ ତା' ହୃଦୟ ମଧ୍ୟରେ ଏକ ଓଜନିଆ ପଥର କେଉଁଠାରୁ ଆସି ସ୍ଥିର ହୋଇଯାଇଥିଲା, ଝଡ଼ରେ ଉଡ଼ି ଆସିଥିବା ବାଦଲ ନାମକ ଏକ ନିଃସଙ୍ଗ ପଥର ।

ଅନିର୍ବାଣର ସମୟ ନଥିଲା । ଅନ୍ୟ ପକ୍ଷରେ ତା' ପାଇଁ ନବଦ୍ୱୀପର କନ୍ୟାଦେଖା ପର୍ବ ପ୍ରାୟ ଶେଷ ହୋଇଯାଇଥିଲା । ସେ କହିଲା—ଘରେ ତୁମ ସମ୍ପର୍କରେ ସାମାନ୍ୟ ଧରଣର ପ୍ରସ୍ତାବ ଆଗତ କରିଥିଲି, ଭାଉଜ କହିଲେ, ରିଫିଉଜି ଫିଫିଉଜି ହେଲେ ଚଳିବ ନାହିଁ । ଅଗତ୍ୟା ଏ ପରିସ୍ଥିତିରେ ଗାନ୍ଧର୍ବ ମତରେ କିଛି କରାଯାଇ ପାରିବ କି ନାହିଁ ଟାଲ ଦେଖିବା । ବିଳମ୍ବ କଲେ ନବଦ୍ୱୀପ ପ୍ରସ୍ତାବ ହିଁ ଧାର୍ଯ୍ୟ ହୋଇଯିବ କି ନାହିଁ କିଏ ବା କହିପାରେ !

ଏହି କାରଣରୁ ଯେ କଲ୍ୟାଣୀ ବିଳମ୍ବ କଲାନାହିଁ ତାହା ମଧ୍ୟ ନୁହେଁ । ତିଳଜଳାର ଅନ୍ଧକାର ଗୃହ ମଧ୍ୟରେ ଅସ୍ୱାସ୍ଥ୍ୟକର ମନ, ନାନା ଆଶଙ୍କା ଓ ଭୟ ନେଇ ରାତିସାରା ହୃଦୟ ମଧ୍ୟରେ କମ୍ପନକୁ ଚାପିରଖି କେହି ଜଣେ ପାଖକୁ ଆସିଲେ ଚମକି ଚାହିଁବ, ପାଦ ନିକଟରେ ବିଲେଇଟିଏ ବସି ପଡ଼ିଲେ ଧଡ଼ପଡ଼ କରି ଉଠି ବସିବ, ପ୍ରତ୍ୟୁଷ ନହେବା ପର୍ଯ୍ୟନ୍ତ ଶ୍ୱାସ ବନ୍ଦକରି ପଡ଼ି ରହିଥିବ—ଏପରି ଆଉ କେତେଦିନ ! କଲ୍ୟାଣୀ ଏଥିପାଇଁ କୌଣସି ଆପତ୍ତି କରି ନଥିଲା । ଅପରାହ୍ଣରେ ସେ ପାର୍କ ସର୍କସ ଅଞ୍ଚଳରେ ଦୁଇଟି ଟିଉସନ କରେ । ଟିଉସନରୁ ମିଳିଥିବା ଟଙ୍କା ଆଣି ଗଡ଼ିୟା ହାଟରୁ ଦୁଇଟି ଶାଢ଼ି କିଣିଲା । ନୂଆ ଶାଢ଼ି ପିନ୍ଧି ସେ ଘରୁ ବାହାରିବା ସମୟରେ ପରିମଳକୁ ଡାକି କହିଗଲା—'ଯଦି ପାରିବୁ ଜ୍ୟୋତିଭାଇ ନିକଟକୁ ଚାଲିଯିବୁ ।' ପିଉସୀ ଦିନେ କହୁଥିଲେ ଜ୍ୟୋତିପ୍ରକାଶ ବର୍ଦ୍ଧମାନଠାରେ ଲୁଗା ବ୍ୟବସାୟ କରୁଛି । ରକ୍ତସମ୍ପର୍କୀୟ ମଣିଷମାନଙ୍କ ମଧ୍ୟରେ ଏ ସହର ଯେ କେତେ ବ୍ୟବଧାନ ସୃଷ୍ଟି କରିଛି—ଏକାକିନୀ ଅବସ୍ଥାରେ କଲ୍ୟାଣୀ ତାହା ଅନୁଭବ କରେ । ମୟମନସିଂହ ଘରେ ଜ୍ୟୋତିପ୍ରକାଶ, ପରିମଳ ଆଉ ସେ ତାସର ମ୍ୟାଜିକକୁ ନେଇ ହୋ-ହୋ କରି ହସୁଥିଲେ, ଆସରରେ ମଜିରହିଥିବା ବେଳେ ସେମାନେ ମଧ୍ୟାହ୍ନଭୋଜନ କଥା ଭୁଲିଯାଉଥିଲେ, ପୋଖରୀରେ ବନଶୀ ପକାଇବା ସମୟରେ ସମଗ୍ର ଅପରାହ୍ଣ ବନଶୀରେ ଲାଗିଥିବା ଭସା ସୋଲ ଉପରେ ତିନିଜଣଙ୍କର ଦୃଷ୍ଟି ସ୍ଥିର ରହୁଥିଲା—ଏସବୁ ଭାବିଲେ ସ୍ୱପ୍ନପରି ଲାଗେ । ଯେପରି ଜନ୍ମଠାରୁ ଯୋଜନ ଯୋଜନ ଦୂରତ୍ୱ ନେଇ ସେମାନଙ୍କର ବୟସ ବଢ଼ିବାରେ ଲାଗିଛି ।

ବାହାଘର ପଦାର୍ଥଟି ଯେ ବିଶେଷ କିଛି ମୂଲ୍ୟବାନ୍—ଏ ସମସ୍ତ ମନରୁ ପୋଛିଦେଇ ଅନିର୍ବାଣକୁ ବାହା ହେବାକୁ ସେ ସ୍ଥିର କରିଥିଲା । ହରିନାରାୟଣ ମଝିରେ ମଝିରେ କୁହନ୍ତି—'ମୋର ଏକମାତ୍ର ଝିଅ । ଏହି ଝିଅକୁ ମୁଁ ବାରିଷ୍ଟରି ପଢ଼ାଇବି । ଝିଅର ବାହାଘର ଏପରି ଜାକଜମକରେ କରିବି ଯେ, ସହର ସାରା ଲୋକେ କହିବେ ବାହାଘର ପରି ବାହାଘରଟିଏ

ହେଲା, ଜୋଇଁକୁ ମୁଁ ଘରଜୋଇଁ କରି ରଖିବି । କେବଳ ଯେ ବଞ୍ଚିରହିବା ପାଇଁ ଏତେ ଅପରିଷ୍କାର ପରିବେଶ ମଧ୍ୟରେ ତାକୁ ଘାଣ୍ଟି ହେବାକୁ ହେଉଛି, ନିର୍ମମ ନିଷ୍ଠୁର ମଣିଷଙ୍କ ସହ ତାକୁ ବୁଝାମଣା କରିବାକୁ ପଡୁଛି, ତା'ପରି ଅଲିଅଳରେ ବଢ଼ିଥିବା ଝିଅ ପକ୍ଷରେ ଏହା ସମ୍ଭବ ହେଲା କିପରି—କଲ୍ୟାଣୀ ଚିନ୍ତାକରି ଆଦିଅନ୍ତ ପାଏନାହିଁ । କଲ୍ୟାଣୀ ବର୍ତ୍ତମାନ ହୃଦୟଙ୍ଗମ କରିପାରୁଛି ଜୀବନ କିପରି ପଦାର୍ଥ । ବ୍ରହ୍ମପୁତ୍ରର ପବନରେ ଭାସୁଥିବା ଜୀବନ ଏହା ନୁହେଁ । ଏଠାରେ ଏକ ମଣିଷର ଅନ୍ତରଠାରୁ ଗୋଟିଏ ଅଚଳ ସୁଉକିର ମୂଲ୍ୟ ଯଥେଷ୍ଟ ଅଧିକ । ଦେଶରୁ ଯେଉଁଦିନ ଟେଲିଗ୍ରାମ ଆସିଲା, ହରିନାରାୟଣଙ୍କର ଦେହାନ୍ତ ହୋଇଯାଇଛି, କଲ୍ୟାଣୀ ସେହିଦିନ ବୁଝିଥିଲା ତାକୁ ଏହି ଘରର ସମସ୍ତ ଅଭିନୟ ଯଥାଶୀଘ୍ର ଶେଷ କରିବାକୁ ହେବ । ସେତେବେଳକୁ ସେ ପ୍ରେବୋର୍ଣ୍ଣରୁ ବି.ଏ. ପାସକରି ସାରିଥିଲା, ବାରିଷ୍ଟରି ହୋଇନାହିଁ । ଆହୁରି ମଧ୍ୟ ସ୍ୱୟଂ ହରିବାବୁ ଯେତେବେଳେ ଆଉ ଇହଜଗତରେ ନାହାନ୍ତି ସେତେବେଳେ ସେ ସାମାଜିକ ବାହାଘରର ଆଶା ତ୍ୟାଗକରି ଆତ୍ମୀୟସ୍ୱଜନଙ୍କ ଅନୁପସ୍ଥିତିରେ କୋର୍ଟର ଓକିଲଙ୍କ ସାମନାକରି ଅନିର୍ବାଣକୁ ସ୍ୱାମୀଭାବରେ ସ୍ୱୀକାର କରି ରେଜିଷ୍ଟ୍ରି ଖାତାରେ ଦସ୍ତଖତ କରିଥିଲା ।

ବାହାଘର ହୋଇଗଲା । ସ୍ୱାଭାବିକ ରୀତିରେ ଜୀବନ ଗଡ଼ିଚାଲିଲା । ବଡ଼ମାମୁ, ମାଇଁ, ପିଉସୀ, ପିଉସା, ନୀଳୋତ୍ପଳ କକାଙ୍କୁ ସୁବିଧା ଦେଖି ପ୍ରଣାମ ଜଣାଇ ଆସିବାକୁ ପଡ଼ିଲା । ମାଇଁ କହିଲେ—'ବେଶ୍ ଫାଙ୍କି ଦେଇ ଚାଲିଗଲୁ । ତୋର ବଡ଼ଭଉଣୀମାନଙ୍କର ବାହାଘର ବାକି ରହିଗଲା । ଏମାନଙ୍କ କଥା ଥରଟିଏ ହେଲେ ଚିନ୍ତା କଲୁ ନାହିଁ !' କଲ୍ୟାଣୀ ମନେ ମନେ ହସୁଥିଲା । ସେ କ'ଣ ଶାନ୍ତି ସୁନୀତିଙ୍କୁ ଫାଙ୍କି ଦେଇଛି, ନା ନିଜକୁ ନିଜେ ଫାଙ୍କି ଦେଇଛି ? ହୃଦୟ ମଧ୍ୟରେ ପୋଷିରଖିଥିବା ସ୍ୱପ୍ନକୁ ଅତି ଚତୁରତାର ସହ ସେ ଠକି ଦେଇଛି ! ତା'ର ଏଥିରେ କ'ଣ ବା ଲାଭ ହୋଇଛି ? ବାଦଲ ସହିତ ରିକ୍ସାରେ, ନୌକାରେ, ଏପରିକି ଘାସଉପରେ ବସି ଯେତେବେଳେ ଗପ କରେ, ଆନନ୍ଦ ଓ ଲଜ୍ଜାରେ ତା'ର ମୁହଁ ଲାଲ ପଡ଼ିଯାଏ, ହୃଦୟ ଭିତରେ ରିମ୍‌ଝିମ ରିମ୍‌ଝିମ କରି ସୁଖ ବର୍ଷିଯାଏ । କାହିଁ ଅନିର୍ବାଣ ସହିତ ଦେହରେ ଦେହ ଲଗାଇ ବସି ମଧ୍ୟ କେବେ ତ ସେ ଏପରି ଅନୁଭବ କରିନାହିଁ ! କେହି ଦେଖି ପକାଇବାର ଭୟ ନଥିଲା, ଯେତେବେଳେ ଇଚ୍ଛା ସେତେବେଳେ ବୁଲିବାକୁ ଚାଲିଯାଉଥିଲା । ସେ ଘରର ଯାବତୀୟ କାମ ଶେଷକରି ଯାଉଥିବା ଦୃଷ୍ଟିରୁ ମାଇଁ କୌଣସି ପ୍ରକାର ପ୍ରତିବାଦ କରୁନଥିଲେ । ଏତଦ୍‌ଭିନ୍ନ କଲ୍ୟାଣୀ ଟିଉସନ

କରୁଥିଲା । ଏଥିପାଇଁ ତାକୁ ବାହାରକୁ ଯିବାକୁ ହିଁ ହେବ । ଟିଉସନ କରିବା ବିଷୟକୁ କେନ୍ଦ୍ରକରି ତ ଆପତ୍ତି କରାଯାଇ ପାରେନା । ଆପତ୍ତି ବା କରିବେ କାହିଁକି ? ଗଣି ଗଣି ସେ ଅର୍ଦ୍ଧାଧିକ ଟଙ୍କା ମାଈଁଙ୍କ ହାତକୁ ବଢ଼ାଇ ଦେଉଥିଲା । ଅନିର୍ବାଣ ସହିତ ଘଣ୍ଟା ପରେ ଘଣ୍ଟା ସେ ନିର୍ବିଘ୍ନରେ ବୁଲି ବୁଲି ଅତିବାହିତ କରୁଥିଲା । ବାଦଲ କ୍ଷେତ୍ରରେ ଏହା ଥିଲା ଭିନ୍ନ ଧରଣର । ବାଦଲ କ୍ଷେତ୍ରରେ ତାକୁ ଘରେ କହିବାକୁ ପଡୁଥିଲା କଲେଜରେ ପ୍ରାକ୍ଟିକାଲ ଅଛି ନତୁବା ବାନ୍ଧବୀର ଜନ୍ମଦିନ । ସାତଦିନ ପୂର୍ବରୁ ସେମାନେ ଜାଣୁଥିଲେ କେବେ କେଉଁଠାକୁ ଯିବେ । ଦିନ ଯେତେ ପାଖେଇ ଆସେ ଛାତିଭିତର ସେତେ ଅଧିକ ଧଡ଼ପଡ଼ କରେ । ଲୁଚି ଲୁଚି ପ୍ରେମ କରିବାରେ ଯେ ଅନ୍ୟ ଏକ ପ୍ରକାର ସ୍ୱାଦ ରହିଛି, କଲ୍ୟାଣୀ ତାହା ଅନୁଭବ କରେ । ନଦୀ-ବୃକ୍ଷ-ପଡ଼ୋଶୀ-ଆତ୍ମୀୟସ୍ୱଜନ ପରିବେଷ୍ଟିତ ଏକ ପ୍ରାଣବାନ୍ ଜୀବନକୁ ଅକସ୍ମାତ୍ ଯଦି କୌଣସି ଝଡ଼ର ପବନ ନିରୁଦ୍ଦେଶ ଭାବେ ଉଡ଼ାଇ ନେଇଯାଏ ତେବେ ତାର ଭାବନାର ସଂସାରରେ ଧୂଳି ଆଉ ଝରାପତ୍ର ଭିନ୍ନ କ'ଣ ବା ଥାଏ ! ଶରିଫା କେଉଁଠାରେ–କୁଆଡ଼େ ଗଲା ତା' ଦେହଛୁଇଁ ଦେଇଆସିଥିବା ପ୍ରତିଶ୍ରୁତି, ବାଦଲ କେଉଁଠି–କୁଆଡ଼େ ଗଲା ତା' ସହିତ ଜୀବନ ଗଢ଼ିବାର ସ୍ୱପ୍ନ ? ଛୋଟ ନୌକାରେ ବସି ତା'ର ଗୁଣୁଗୁଣୁ ସ୍ୱରରେ ଗାଉଥିବା ଗୀତ 'କେଉଁଠୁ ପାଇବି କଳସୀ କହଗୋ କେଉଁଠୁ ପାଇବି ଡୋରି, ତୁମେ ତ ହୋଇବ ଗଭୀର ଗଙ୍ଗା ମୁହିଁ ଯିବି ବୁଡ଼ି ମରି' କଲିକତାର ପବନରେ ସେସବୁ ଧୂଳିଭଳି ଉଡ଼ିଯାଇଥିଲା । ବାହାଘର ପରେ ଟାଲିଗଞ୍ଜର ଏକ ପ୍ରାଇମେରୀ ସ୍କୁଲରେ ସେ ଚାକିରି ଯୋଗାଡ଼ କରି ନେଇଥିଲା । ଏହି ଚାକିରି ଖଣ୍ଡିକ ପାଇବାପାଇଁ ତା'ର ଜୋତା ଘୋରି ହୋଇଯାଇଥିଲା, ତାକୁ ବ୍ୟୟ କରିବାକୁ ପଡ଼ିଥିଲା ଅସୀମ ଶକ୍ତି ଓ ତୀକ୍ଷ୍ଣ ମେଧା । ଏହି ବିଦ୍ୟାଳୟ କାର୍ଯ୍ୟରେ ଥରେ ତାକୁ ବନଗାଁ ଯିବାକୁ ପଡ଼ିଥିଲା, ବନଗାଁଠାରୁ ଚାଲି ଚାଲି ସେ ଯେତେବେଳେ ସୀମାନ୍ତର ଅନେକ ନିକଟବର୍ତ୍ତୀ ସ୍ଥାନକୁ ଚାଲିଗଲା, ଦିଗନ୍ତ ଅଭିମୁଖେ ଚାହିଁ ହଠାତ୍ ତା'ର ଅନ୍ତର ମଧ୍ୟରେ ହାହାକାର ଭରିଯାଇଥିଲା । ସେ ଜାଣେନା କାହିଁକି ଏପରି ହେଲା । ହେଇ ତ ଆକାଶ–ଆକାଶ ଖୁବ୍ ନିକଟରେ–ଯେପରିକି ହାତ ବଢ଼ାଇଲେ ଛୁଇଁହେବ–ଏହି ଆକାଶ ତଳେ ତା'ର ସ୍ୱପ୍ନଗୁଡ଼ିକ କିପରି ଅଛନ୍ତି–କିପରି ଅଛନ୍ତି ବାଦଲ, ଶରିଫା, ମୁନ୍ନି, ଅନିଲକକା, ରୁଖସାନା–କିପରି ଅଛି ତା'ର ଜନ୍ମଦାତ୍ରୀ ସହର-ଗୃହାଙ୍ଗନ-ବ୍ରହ୍ମପୁତ୍ର–ଏବେବି କ'ଣ ତା'ପରି କୌଣସି ଦୁରନ୍ତ ଅସ୍ଥିର ବାଳିକା ପଡ଼ିଆସାରା ଅନ୍ଧପୁଟୁଳି ଖେଳ ଖେଳେ, ସେହି ବାଳିକାର ଆଖିରେ ଅନ୍ଧପୁଟୁଳିର ରୁମାଲ ବାନ୍ଧି ତାକୁ କ'ଣ ପୃଥିବୀର ନିଷ୍ଠୁର ମଣିଷମାନେ ଦେଶାନ୍ତରୀ କରନ୍ତି ?

ଜ୍ୟୋତିପ୍ରକାଶ ହରିନାରାୟଣଙ୍କ ମୁଖାଗ୍ନି ଦେବାପାଇଁ ଯାଇଥିଲା, ହେଲେ ଦେଇପାରିଲା ନାହିଁ । ବିଳମ୍ବ ହେଉଥିବାର ଲକ୍ଷ୍ୟକରି ପାଖ ପଡ଼ୋଶୀମାନେ ସେ ଦାୟିତ୍ୱ ନେଇଥିଲେ । ତାହା ବା ନକରିଥାଆନ୍ତେ କାହିଁକି ? ଅସୁସ୍ଥ ହେବାରୁ ଯେଉଁମାନେ ଡାକ୍ତରଖାନାକୁ ନେଲେ, ଡାକ୍ତରଙ୍କ ପଛରେ ଲାଗି ସମସ୍ତ କିଛି ବ୍ୟବସ୍ଥା କରିଥିଲେ, ପଥ୍ୟ ଓ ଔଷଧ ଖୁଆଇଲେ, ରୋଗଶଯ୍ୟା ନିକଟରେ ଅନିଦ୍ର ରଜନୀ ଅତିବାହିତ କଲେ– ଶବକୁ ଘରେ ରଖି ସେମାନେ ପଚିବାକୁ ବା କାହିଁକି ଦେଇଥାନ୍ତେ ? 'ବୋଲହରି ହରିବୋଲ' କହି ସେମାନେ କାନ୍ଧରେ ହରିନାରାୟଣଙ୍କ ପ୍ରାଣହୀନ ଶରୀର ଶ୍ମଶାନକୁ ନେଇଯାଇଥିଲେ । ଅନିଲ ମୁଖାର୍ଜିଙ୍କ ପୁଅ ସୌମେନ ଚିତାଗ୍ନିରେ ଅଗ୍ନିସଂଯୋଗ କରିଥିଲା । ସରଳାବାଳାଙ୍କୁ କଲିକତା ଘେନି ଆସିବା ପାଇଁ ସମସ୍ତ ପ୍ରକାର ଉଦ୍ୟମ କରି ଜ୍ୟୋତିପ୍ରକାଶ ବିଫଳ ହେଲା । 'ଜୀବନର ବାକି କେତେଟା ଦିନ ସ୍ୱାମୀ ଶ୍ୱଶୁରଙ୍କ ଭିଟାମାଟିରେ ଅତିବାହିତ କରିବାକୁ ଦିଅ, ମୁଁ ବା ଆଉ କେତେଦିନ ବଞ୍ଚି ରହିବି ? ମୋତେ ଆଉ ଟାଣିଓଟାରି ନେବାକୁ ଚେଷ୍ଟାକର ନାହିଁ'–ଏହିସବୁ କଥା କହି ସରଳାବାଳା କାନ୍ଦିଥିଲେ । ବାଧ୍ୟ ହୋଇ ଏକା ଏକା ଜ୍ୟୋତିପ୍ରକାଶକୁ ଫେରିଆସିବାକୁ ହୋଇଥିଲା । ପରେ ଯେତେବେଳେ ସରଳାବାଳାଙ୍କ ମୃତ୍ୟୁ ଖବର ଆସିଥିଲା, ଜ୍ୟୋତିପ୍ରକାଶ ଯାଇନଥିଲା, କହିଥିଲା–'ଶ୍ମଶାନଘାଟକୁ ଯିବାପାଇଁ ମୋତେ ଭଲଲାଗେ ନାହିଁ । ବଡ଼ପୁଅ ହେବାରେ ଏହାହିଁ ବିପଦ, ମୁହଁରେ ଟୋପାଏ ପାଣିଦେବାର ଉପାୟ ନାହିଁ, ନିଆଁ ଦେଇ ଫେରିବାକୁ ହୁଏ ।' କଲ୍ୟାଣୀ ଯିବାପାଇଁ ଚାହିଁଥିଲା, ଅନିର୍ବାଣ କହିଥିଲା–'ତୁମେ ଯିବ କ'ଣ ! ତୁମର ତ ଆଡ୍‌ଭାନ୍‌ସ ଷ୍ଟେଜ ।'

ଦେଶରୁ ଅନିଲ ମୁଖାର୍ଜୀଙ୍କ ନିକଟରୁ ଚିଠି ଆସିଥିଲା–'ତୁମ୍ଭେମାନେ ଆସି ଘରଟିର କିଛି ବ୍ୟବସ୍ଥା କର । ଦରଜାରେ ତାଲା ପକାଇ ଦେଇଛି । ମୋର ମଧ୍ୟ ବୟସ ହୋଇଯାଇଛି । ଆଖିକୁ ଭଲ ଦେଖାଯାଉ ନାହିଁ । ସବୁ ଦିଗରୁ ରକ୍ଷଣାବେକ୍ଷଣ କରିପାରିବି ନାହିଁ । ଏପରି ଭାବରେ ଘର ପକାଇ ରଖିବା ଠିକ୍ ହେବ ନାହିଁ । ଘରଟିକୁ ବିକ୍ରି କରି ନଦେଲେ ବେଦଖଲ ହୋଇଯିବାର ଆଶଙ୍କା ଅଛି । ଭଗବାନ ତୁମ୍ଭମାନଙ୍କର ମଙ୍ଗଳ କରନ୍ତୁ ।'

କଲ୍ୟାଣୀ ଜ୍ୟୋତିପ୍ରକାଶକୁ ଘରବିକ୍ରି ସମ୍ପର୍କରେ ଜଣାଇବା ପରେ ସେ ବର୍ଦ୍ଧମାନଠାରୁ ଚିଠି ଲେଖି ଜଣାଇଦେଲା–'ନିଜ ହାତରେ ମୁଁ ଏହି ଘର ବିକ୍ରି କରିପାରିବି ନାହିଁ । ମୁଁ ଏପର୍ଯ୍ୟନ୍ତ ଏତେ ନିଷ୍ଠୁର ହୋଇ ପାରିନାହିଁ । ମୋର ଟଙ୍କାର ଏପରି କିଛି

ଆବଶ୍ୟକ ନାହିଁ ଯେ ସ୍ମୃତିଗୁଡ଼ିକୁ ସେର ଦରରେ କାହା ନିକଟରେ ବିକ୍ରି କରିଦେବି । ତା' ଅପେକ୍ଷା ଯେପରି ପଡ଼ିରହିଛି ସେହିପରି ପଡ଼ିଥାଉ, ଜାଣିବି ଯେ ସେଠାରେ ଆମ୍ଭମାନଙ୍କର କିଛି ହେଲେ ରହିଛି ।'

ପରିମଳକୁ ଏ ବିଷୟରେ କହିବାରୁ ସେ କହିଲା—ଶୁଣିବାକୁ ପାଉଛି ସେଠାରେ ଶତ୍ରୁ-ସମ୍ପତ୍ତି ଆଇନ୍ ହୋଇଛି । ଦେଶ ତ୍ୟାଗକଲେ ସରକାର ଜମିବାଡ଼ି ନେଇଯାଉଛନ୍ତି । କି ଦରକାର ଝମେଲା ଭିତରକୁ ଯିବା, ଆହୁରି ମଧ୍ୟ ସେହି ଘର ଏନିମି ପ୍ରପୋର୍ଟି ଭୟରେ ବର୍ତ୍ତମାନ କେହି କିଣିବେ ନାହିଁ ।

—କିରେ ପରିମଳ, ଆମମାନଙ୍କର ପ୍ରପୋର୍ଟି ପରା ଏନିମି ପ୍ରପୋର୍ଟି ! ଆମେମାନେ ଦେଶର ଶତ୍ରୁ ଥିଲେ ?

ପରିମଳ ଆଉ କଥା ବଢ଼ିବାକୁ ଦେଲାନାହିଁ । ଚାଲିଗଲା । ତା'ର ମଧ୍ୟ ବ୍ୟସ୍ତତା ବଢ଼ିଯାଇଛି । ଗୋଟିଏ ଏଡ଼୍ ଫାର୍ମରେ ଲେଖାଲେଖି କାର୍ଯ୍ୟ କରେ । ଖୁବ୍ ପ୍ରୟୋଜନ ମନେ ନକଲେ କଲ୍ୟାଣୀ ଘରକୁ ପରିମଳ ଆସେ ନାହିଁ । ସେ ନାକତଲାରେ ରୁହେ । ଜ୍ୟୋତିପ୍ରକାଶ ନିକଟକୁ ଯେ ଯାଇନାହିଁ ସେକଥା ନୁହେଁ, ଯାଇ ଦେଖିଛି ରହିବାର ସ୍ଥାନଟି ଦଶ ଫୁଟରେ ଦଶଫୁଟ, ପଡ଼ୋଶୀମାନଙ୍କୁ ନେଇ ସେହି ଘରେ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ସେ ଜୁଆଖେଳେ । ଜ୍ୟୋତିପ୍ରକାଶ କୌଣସି ଦ୍ୱିଧା ନରଖି ପରିମଳକୁ କହିଦେଇଥିଲା—'ଏ ଘରେ ରହିଲେ ତୁ ମଣିଷ ହେଇପାରିବୁ ନାହିଁ । ତା' ଛଡ଼ା ମୋର ଏହି ତେଲ-ଲୁଣ ସଂସାରରେ ତୋର ଖର୍ଚ୍ଚ ତୁଲାଇବି କିପରି ? ତାଠାରୁ ବରଂ ଭଲ ତୁ କଲ୍ୟାଣୀ ନିକଟକୁ ଚାଲିଯାଆ ।' କଲ୍ୟାଣୀ ଦିନେ ଅନିର୍ବାଣକୁ କହିଥିଲା—'ଆମ ଭାଇଭଉଣୀଙ୍କ ମଧ୍ୟରେ ଯେ କି ନିବିଡ଼ ସମ୍ପର୍କ ଥିଲା ! ପୂର୍ଣ୍ଣିମାରେ ରାତିସାରା ଛାତ ଉପରେ ବସି ଗୀତ ଗାଉଥିଲୁ । ଲୋକେ କହୁଥିଲେ ଦୁଇଟି ପତ୍ରରେ ଗୋଟିଏ କଳିକା । ବର୍ତ୍ତମାନ ବର୍ଷରେ ଥରଟିଏ ମଧ୍ୟ ଦେଖାହୁଏ ନାହିଁ । ପରିମଳ କ'ଣ ଖାଏ, କେଉଁଠାରେ ଯେ ରୁହେ, ଶୁଖି ଶୁଖି କଳାକାଠ ପଡ଼ିଗଲାଣି । ଆମର ଏଠାରେ ଆସି ସେ ତ ରହିପାରନ୍ତା, କ'ଣ କହୁଛ ?'

ଏତକ କହିବା ପରେ, ବଡ଼ ଆଶା ନେଇ ସେ ଅନିର୍ବାଣ ମୁହଁକୁ ଚାହିଁରହିଥିଲା । ଅନିର୍ବାଣ ସିଧାସଳଖ ଭାବେ ପରିମଳକୁ ଘରକୁ ନଆଣିବା ପାଇଁ ଅବଶ୍ୟ କହିଲା ନାହିଁ । କହିଲା—'ତିଳଜଳାସ୍ଥ ମାମୁଘରେ ବିତାଇଥିବା ଜୀବନର ଅଭିଜ୍ଞତା ତୁମର ଅଛି । ଏଭ୍ରିଓ୍ୱାନ ସୁଡ଼ ଷ୍ଟ୍ରଗଲ ଫର୍ ଏକଜିଷ୍ଟାନ୍ସ । କଲିକତାରେ କେତେ ଲୋକ ଫେରି କରି ଜୀବିକା ନିର୍ବାହ କରନ୍ତି ଜାଣ ?'

ଏହାର ଅର୍ଥ କଲ୍ୟାଣୀ ସହଜରେ ବୁଝିନେଲା ।

ଦଶଟାରୁ ପାଞ୍ଚଟା ପର୍ଯ୍ୟନ୍ତ ଚାକିରି କ୍ଷେତ୍ରରେ ଅତିବାହିତ କରି, ଘରସଂସାର ଚଳାଇ, ସନ୍ତାନର ଲାଳନପାଳନ କରି, ସ୍ୱାମୀଙ୍କ ଆଦେଶ ଓ ଫର୍ମାସ ପାଳନ କରି, ଛୋଟ ବଡ଼ ଅନେକ ସୁଖ-ଦୁଃଖ ସହି କଲ୍ୟାଣୀ ବହୁବର୍ଷ ବିତାଇ ଦେଇଛି । ଜୟିଷାର ଜନ୍ମ ପୂର୍ବରୁ ତା'ର ତିନିଥର ସ୍ୱଣ୍ଣାନିୟସ ଏବରସନ୍ ହୋଇଯାଇଛି । ଅନିର୍ବାଣ ସେ ସମୟରେ ଏପରି ଭାବେ ମୁଖ ବିକୃତ କରେ ଯେପରିକି କଲ୍ୟାଣୀ ଏଥିପାଇଁ ଏକା ଦାୟୀ । ଗତ ଜନ୍ମରେ ସେ କିଛି ପାପ କରିଛି । ଗତ ଜନ୍ମ କହିଲେ କଲ୍ୟାଣୀର ମୟମନସିଂହ ଜୀବନକୁ ହୁଏତ ବୁଝାଇଥାଏ । ଏହାପରେ ଜୟିଷା ଜନ୍ମ ହୋଇଥିଲେ ମଧ୍ୟ ଅନିର୍ବାଣର ମନରେ ଶାନ୍ତି ନଥିଲା । ମନରେ ଶାନ୍ତି ଓ ସନ୍ତୋଷ ଆସିଲା ଦୀପେନ ଜନ୍ମହେବା ପରେ । ଜୟିଷା ପରେ ଦୀପେନ ଜନ୍ମ ହେବାକୁ ବାରବର୍ଷ ସମୟ ଲାଗିଥିଲା । ଜୀବନର ଏହି ବାରଟି ବର୍ଷ ଅନିର୍ବାଣର ମାନସିକ ସନ୍ତୁଳନ ମଧ୍ୟରେ ଅତିବାହିତ ହୋଇଛି । ଗର୍ଭରେ ପୁତ୍ରସନ୍ତାନଟିଏ ଧାରଣ କରି ନପାରିଲେ କଲ୍ୟାଣୀର ବା କି ପ୍ରତିକାର କରିବାର ଥିଲା ? ଡାକ୍ତର ପରୀକ୍ଷା କରି କହିଥିଲେ ପିଲା ନହେବାର କୌଣସି କାରଣ ନାହିଁ, ଧୈର୍ଯ୍ୟ ଧରନ୍ତୁ, ହେବ । ତଥାପି ଅନିର୍ବାଣ ବିଳମ୍ବ ସହିପାରେନା । ମାସ ମାସ ଧରି ସେ ପ୍ରଶ୍ନ କରିଛି—କ'ଣ ଏଥର ମଧ୍ୟ ଲାଲ ପତାକା ଉଡ଼ାଇଲ ?

କଲ୍ୟାଣୀ ଏହା ଶୁଣି ଲଜ୍ଜାବୋଧ କରେ, ଯେପରିକି ପୁଅ ନହେବାର ସମସ୍ତ ଦୋଷ କଲ୍ୟାଣୀର । ସେ ଭଲଭାବେ ବୁଝିପାରିଥିଲା, ପୁଅଟିଏ ଜନ୍ମ ନଦେଇ ପାରିବା ଅର୍ଥ ମୂଲ୍ୟହୀନ ନାରୀତ୍ୱ ନେଇ ବଞ୍ଚି ରହିବା । ଜୟିଷା ଖୁବ୍ ଶୀଘ୍ର ଶୀଘ୍ର ବଢୁଥିଲା । ତା'ର ଲେଖାପଢ଼ା, ନିଜର ଚାକିରି, ଏସବୁ ବିଷୟ ନେଇ କଲ୍ୟାଣୀ ବ୍ୟସ୍ତ ଜୀବନ ଅତିବାହିତ କରେ, ତଥାପି ଅନିର୍ବାଣର ଦୀର୍ଘଶ୍ୱାସ ତାକୁ ଶାନ୍ତିରେ ନିଦ୍ରାଯିବାକୁ ଦିଏନାହିଁ । ଜୟିଷା ମଧ୍ୟ ବୁଝେ ତାକୁ ପାଇ ବାପାଙ୍କ ମନରେ ଆନନ୍ଦ ନାହିଁ । ଗୋଟିଏ ପୁଅ ପାଇବା ଆଶାନେଇ ଅନିର୍ବାଣ ପରି ଆଧୁନିକ ପିଲା ତାରାପୀଠ ପର୍ଯ୍ୟନ୍ତ ଦୌଡ଼ିଛି । ଶଶୁରଘରର ଲୋକେ ଆସି ଚୁ-ଚୁ କରି ସମବେଦନା ଦେଖାଇବା ଆଳରେ ଦୁଃଖକରି ଯାଆନ୍ତି, କହନ୍ତି—'ବୋହୂର କୌଣସି ବଡ଼ ଧରଣର ବେମାରି ଅଛି କି ନାହିଁ କିଏ ବା ଜାଣେ !' କଲ୍ୟାଣୀ ଏ ସମସ୍ତ କଥାପ୍ରତି କାନ ନଦେଲେ କ'ଣ ହେବ, ଅନିର୍ବାଣ କିନ୍ତୁ ଉତ୍ସୁକ ହୋଇ ଶୁଣେ । ବଂଶର ପ୍ରଦୀପ କିଏ ଜଳାଇ ରଖିବ, ଜୟିଷାକୁ ବାହା କରିଦେଲେ ତ ସେ ପର ହୋଇଯିବ, ନିଜର ହୋଇ କିଏ ବା ରହିବ—ଏହି ସବୁନେଇ ମଧ୍ୟରାତ୍ର ପର୍ଯ୍ୟନ୍ତ

ଆଉ ଦଶଜଣ ସାଧାରଣ ମଣିଷଙ୍କ ଭଳି 'ହାୟରେ ପିତୃତ୍ୱ !' ଦୁଃଖରେ ମ୍ରିୟମାଣ ହୋଇପଡ଼ିଥାଏ । ଏହା ଦେଖି କଲ୍ୟାଣୀ କେତେଥର କହିଛି—'ମୁଁ କ'ଣ ଏଠାରେ ପୁଅ ତିଆରି କରିବି ?'

—ନା, ତା' ତିଆରି କରିବ କାହିଁକି ? ମା'ଙ୍କର ବୟସ ହୋଇଯାଇଛି । ନାତିର ମୁହଁ ଯଦି ଦେଖିକରି ଯାଇନପାରିଲା, ତାହା ହିଁ ଭାବୁଛି ।

—ଜୟିଷାର ମୁହଁ ତୁମର ମା' ଦେଖୁଛନ୍ତି, ସେଥିରେ କ'ଣ ଚଳିବ ନାହିଁ ?

—ସେ ତ ନାତୁଣୀ । ନାତିର ମୁହଁ କଥା କହୁଛି । ମାଆମାନେ ନାତି ମୁହଁ ଦେଖିବାକୁ ଚାହାନ୍ତି, ସେକଥା ତ ତୁମେ ଜାଣିଛ ।

ଏହି ସମୟରେ କଲ୍ୟାଣୀର ମନେପଡ଼େ ସରଳାବାଳା ନିଜର ଝିଅ ବାହାଘର, ନାତି-ନାତୁଣୀ କିଛି ତ ଦେଖିଗଲେ ନାହିଁ । ସେ ତ ପୁଣି ବାଷଠି ବର୍ଷରେ ଝିଅକୁ ପଠାଇଦେଲେ । ଚାରିବର୍ଷ ପରେ ନିଜେ ଦେହତ୍ୟାଗ କଲେ । ତାଙ୍କର କ'ଣ ମନ ମଧ୍ୟରେ ନାତି ଦେଖିବାର କୌଣସି ଆଗ୍ରହ ନଥିଲା ? ଝିଅ ତାଙ୍କର ଲେଖାପଢ଼ା କରିବ, ଜଜ୍ ବାରିଷ୍ଟର ହେବ, କଳାକୋଟ୍ ପିନ୍ଧି ବାପପରି କୋର୍ଟକୁ ଯିବ, ହରିନାରାୟଣଙ୍କ ପରି ସରଳାବାଳା ଏ ପ୍ରକାର ସ୍ୱପ୍ନ ଦେଖୁଥିଲେ । ଏହି ସମସ୍ତ ସ୍ୱପ୍ନର ଚାପରେ ନାତି ମୁହଁ ଦେଖିବାର ଆଗ୍ରହ ତାଙ୍କର କେତେ ଥିଲା କିଏ ବା ଜାଣେ ? ଦୀପେନ ଜନ୍ମହେବା ପରେ ଅନିର୍ବାଣର ଝାଡ଼ଗ୍ରାମରେ ରହୁଥିବା ନିକଟ ଓ ଦୂର ସମ୍ପର୍କୀୟମାନେ କଲିକତା ଘରେ ଆସି ଥାଟପଟାଳ ଭାଙ୍ଗିବାରେ ଲାଗିଲେ, ଯେପରି ଏକ ବନ୍ଧ୍ୟାନାରୀ ପ୍ରସବ କରିଛି, ନଦେଖିଲେ ଚଳିବ ନାହିଁ । ପିଲାର ହାତଗୋଡ଼ ଠିକ୍ ଠିକ୍ ଅଛି କି ନାହିଁ, ଗଣ୍ଠିଗୁଡ଼ିକ ଶକ୍ତ କି ନୁହେଁ, ହୃଦୟରେ ଶ୍ୱାସ-ପ୍ରଶ୍ୱାସ ଠିକ୍‌ଭାବେ ସମୟାନୁଯାୟୀ ଚାଲୁଛି କି ନାହିଁ—ଏହି ସମସ୍ତ ବିଷୟ ଆତ୍ମୀୟମାନେ ପରୀକ୍ଷା କରିଯାଉଥିଲେ । ଅନିର୍ବାଣ ସହ ଦୀର୍ଘ ସାଂସାରିକ ଜୀବନରେ ସେପରି କିଛି ବିଶେଷ ଧରଣର ମନାନ୍ତର ଘଟିନଥିଲା କଲ୍ୟାଣୀର, ବୁଝାମଣାର ଏକ ଅଭ୍ୟାସରେ ସେ କଲିକତାର ଭାଷା ଅଭ୍ୟସ୍ତ କରି ନେଇଥିଲା ବୋଲି କୁହାଯାଇପାରେ । ତିଳଜଳାରୁ ବାହାରିଆସି ସେ ଏକ ସୁସ୍ଥ ଜୀବନଯାପନ କରିବାରେ ଲାଗିଛି—ନିଜକୁ ସେ ଏହିପରି ଅନେକବାର ବୁଝାଇବାକୁ ଚାହିଁଛି । ସାଂସାରିକ ଜୀବନର ଆସକ୍ତି ମଧ୍ୟରେ ନିଜକୁ ସର୍ବଦା ନିମଗ୍ନ କରିବାକୁ ଚାହେଁ, ହେଲେ ତା'ର ମନ ଦୂରକୁ ଦୂରକୁ ଉଡ଼ିଯାଏ । ସଂସାର ମଧ୍ୟକୁ ଏକ ପୁତ୍ରସନ୍ତାନ ଆଣିଥିବାରୁ କଲ୍ୟାଣୀର କିଛି ସମ୍ମାନ ବୃଦ୍ଧି ପାଇଥିଲା । ଅନେକେ ତାକୁ ସ୍ନେହ ଶ୍ରଦ୍ଧାର

ସ୍ମୃତିଭାବରେ ଚୁଡ଼ି ହାର ଦେଇଯାଇଥିଲେ, ଏପରିକି କହିଥିଲେ ତୁମର ନାରୀଜନ୍ମ ସାର୍ଥକ ହୋଇଛି । ଏ ସମସ୍ତ ସେ ଶୁଣିଲେ ମଧ୍ୟ ଅନ୍ତର ମଧ୍ୟରେ ସେପରି କିଛି ଅନୁଭବ କରିପାରିଲା ନାହିଁ । ଜୀବନଟା ତା'ର ହଠାତ୍ ଆକାଶରୁ ଛିଡ଼ିପଡ଼ି ନାହିଁ ଯେ ସେ ସେଥିରେ ଆନନ୍ଦରେ ବିହ୍ୱଳିତ ହୋଇଉଠିବ । ଉଦ୍‌ବାସ୍ତୁ ଜୀବନରୁ ଘରଦ୍ୱାର ପାଇଲା, ଏକ ନିୟମିତ ଚାକିରି ପାଇଲା, ତଥାପି ଏ ସମସ୍ତ ପ୍ରାପ୍ତି ମଧ୍ୟରେ ସେ ଅନୁଭବ କରେ ଯେପରି କିଛି-ନା-କିଛି ଅପ୍ରାପ୍ତି ରହିଯାଇଛି । କଲ୍ୟାଣୀ ଅନ୍ତର ମଧ୍ୟରେ ଶୁଣିବାକୁ ପାଏ ପଛରୁ ତାକୁ ଯେପରି କିଏ ଡାକୁଛି । ସେ ନିଜେ ମଧ୍ୟ ଇତସ୍ତତଃ ହୋଇ ଖୋଜିବୁଲେ କିଏ ବା ତାକୁ ଏତେ ଡାକେ ! ସେହି ପଶ୍ଚାତ୍ ଡାକ ତା'ର ସୁଶୃଙ୍ଖଳ ଜୀବନଧାରାକୁ ହଠାତ୍ ବିପର୍ଯ୍ୟସ୍ତ କରିଦିଏ । ଜୀବନର ଅର୍ଦ୍ଧାଧିକ ସମୟ ପ୍ରାୟ ଅତିବାହିତ କରିଆସିଥିବା କଲ୍ୟାଣୀ ଏହିପରି ଏକ ସିଦ୍ଧାନ୍ତରେ ଉପନୀତ ହୁଏ ଯେ ଜୀବନ ବାସ୍ତବରେ ଏକ ବୃକ୍ଷ ସଦୃଶ, ବୃକ୍ଷ ଯେପରି ଗୋଟିଏ ମାଟିରେ ଉଠି ନୂଆ ଏକ ମାଟିରେ ଶାଖାପ୍ରଶାଖା-ପତ୍ର-ପୁଷ୍ପ ବିସ୍ତାରକରି ପୂର୍ବପରି ବଞ୍ଚେ ନାହିଁ, ଜୀବନ ମଧ୍ୟ ସେହିପରି; ହୁଏତ ଅତିବାହିତ ହୋଇଯାଏ, କିନ୍ତୁ ଏକ ବଡ଼ ଛଳନା ରହିଯାଏ ।

ଗଡ଼ିୟାହାଟ, କାଁକୁଡ଼ଗାଛି, ଟାଲିଗଞ୍ଜ ବୁଲି ବୁଲି ସୌଖୀନ ଜୀବନ ଅତିବାହିତ କରିବା ପରେ ସେ ଆସି ସ୍ଥିର ହୋଇଯାଇଛି ସଲ୍‌ଟ ଲେକ୍‌ଠାରେ । ଝାଡ଼ଗ୍ରାମର ଦୁଇଖଣ୍ଡ ଧାନଜମି ବିକ୍ରୟ ଟଙ୍କା ସହିତ ଆଉ କିଛି ଟଙ୍କା ଯୋଗ କରି ସଲ୍‌ଟ ଲେକ୍‌ଠାରେ ୫ ଡେସିମିଲ ଆୟତନରେ ଜମି ଅନିର୍ବାଣ କିଣିଛି । ପ୍ରଥମକରି ଯେଉଁଦିନ ସେହି ଜମିରେ କୋଦାଳର ଚୋଟ ବସିଲା କଲ୍ୟାଣୀ କହିଲା—ଗେଟ୍‌ର ଦୁଇପାଖରେ ମାଧବୀଲତା ଲଗାଇବାକୁ ହେବ ।

ଇଏ ଗୋଟେ କଥା, ମାଧବୀଲତା ତ ସେପରି କିଛି ଦୁର୍ଲଭ ନୁହେଁ । କାକଟସ୍ ହୋଇଥିଲେ ଖୋଜିବାକୁ ସମୟ ଲାଗନ୍ତା । ଅନିର୍ବାଣ କହିଥିଲା, ଠିକ୍ ଅଛି, ଦେଖିବା ।

ଏହାର ଠିକ୍ ଦୁଇଦିନ ପରେ ଅନିର୍ବାଣ ରାତି ଅଧରେ ପାଣି ପିଇବାକୁ ଉଠି ଦେଖିଲା କଲ୍ୟାଣୀ ଶୋଇନାହିଁ । କଥା କ'ଣ, ଏପର୍ଯ୍ୟନ୍ତ ଶୋଇନାହଁ ଯେ ପଚାରିବାରୁ ସେ କହିଲା—ତୁମେ ବୁଝୁନାହଁ ଅନିର୍ବାଣ, କଳା ଗେଟ୍ ଉପରେ ସବୁଜପତ୍ରଭରା ମାଧବୀଲତା କେତେ ସୁନ୍ଦର ଲାଗେ !

—ଏତେ ରାତିରେ ତୁମେ ମାଧବୀଲତା କଥା ଭାବୁଛ !

ଆହ୍ଲାଦିତା ସ୍ତ୍ରୀ ତା' ସ୍ୱାମୀଙ୍କ ନିକଟରେ ଛିଡ଼ାହୋଇ ଯେଉଁପରି ବିନୀତ ସ୍ୱରରେ ଶାଢ଼ି-ଗହଣା ପାଇଁ ଅଳିକରେ କଲ୍ୟାଣୀ ସେହିପରି ସ୍ୱରରେ କହିଲା—ବାଉଣ୍ଡାରି ୱାଲକୁ ଲାଗି କିନ୍ତୁ ଗୁଆ ଓ ନଡ଼ିଆଗଛ ଲଗାଇବାକୁ ହେବ । ମନେ ମନେ କହିଲା—ଆଉ ଝରକା ପାଖରେ କାମିନୀ ଗଛ । ଜାଗା ହେଲେ ଗୋଟିଏ ଛୋଟ ପୋଖରୀ ଖୋଳାହେବ । ପୋଖରୀ ଆଡ଼ିରେ ଯଦି ଗୋଟିଏ କାଠଚମ୍ପା ଗଛ ରୁହେ, ପାଣି ଉପରେ ଧଳାଧଳା ଫୁଲ ପଡ଼ି ଭାସିଉଠିବ ଓ ମଝିରେ ମଝିରେ ଦଣ୍ଡକିରି ମାଛ ଡେଇଁବା ଦୃଶ୍ୟ ବଡ଼ ଉପଭୋଗ୍ୟ ହେବ ।

ଅନିର୍ବାଣ କଡ଼ ଲେଉଟାଇ ସାମାନ୍ୟ ବିରକ୍ତ ହୋଇ ଜବାବ ଦେଇଥିଲା—ନଡ଼ିଆ ଗଛର ଚେରଗୁଡ଼ିକ ଖୁବ୍ ଶୀଘ୍ର ଚାରିଆଡ଼କୁ ମେଲିଯାଏ । ଘରର ଫାଉଣ୍ଡେସନ୍‌ରେ ତାହା କ୍ଷତି କରିବ ।

କଲ୍ୟାଣୀ ଅନିର୍ବାଣ ନିକଟକୁ ନଇଁପଡ଼ି କହିଥିଲା—କ'ଣ ଯେ ଅର୍ଥହୀନ କଥା କୁହ, ଆମ ଘରେ କ'ଣ ଫାଟ ଧରିଥିଲା ? ଆମ୍ୱ, ଜାମୁ, ତାଳ, ଲିଚୁ, ନଡ଼ିଆ, ଗୁଆ କେଉଁ ଗଛ ବା ସେଠାରେ ନଥିଲା ?

ଅନ୍ତରର କେଉଁ ଏକ ନିଭୃତ କୋଣରେ ସେ ସଯତ୍ନରେ ସାଇତି ରଖିଥିବା ସ୍ୱପ୍ନଟି ଯେତେବେଳେ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ତା' ସମ୍ମୁଖରେ ଉଭାହୁଏ, କଲ୍ୟାଣୀ ସେତେବେଳେ ଏତେ ଆତ୍ମବିସ୍ମୃତ ହୋଇଯାଏ ଯେ, ସେ ବୁଝିପାରେ ନାହିଁ ସେ କେଉଁଠାରେ ଛିଡ଼ାହୋଇଅଛି । ସେ ବୁଝିପାରେ ନାହିଁ ଯେ କଲିକତାର ସ୍ରୋତରେ ଭାସିଆସୁଥିବା ବିଲାତିଦଳ ଜୀବନରେ ମୁଣ୍ଡ ଗୁଞ୍ଜିବା ଯେଉଁଠାରେ ଏକ ଜଟିଳ ସମସ୍ୟା, ସେଠାରେ ଗୁଆ, ନଡ଼ିଆର ବଗିଚା କରିବା ଏକ ପ୍ରକାର ବିଳାସିତା—ଏତେ ଜାଗା ବା କାହିଁ ଆଉ ଏତେ ସମୟ ବା କାହା ପାଖରେ ଅଛି !

ପଲ୍ୟୁଟେଡ଼ କଲିକତାରେ କଲ୍ୟାଣୀ ମୁକ୍ତ ପବନ ଖୋଜିବୁଲେ । ମୁକ୍ତପବନ । କେଉଁଠାରେ ଗଛଲତା ଦେଖିଲେ ମୁହୂର୍ତ୍ତେ ଅଟକିଯାଏ । ଜୟିଷା ଯେତେବେଳେ ଛୋଟ, ଭଡ଼ାଘରର ଏକଚାଳିଆ ବାରଣ୍ଡାଟି ପତ୍ରପୁଷ୍ପଭରା କୁଣ୍ଡରେ ସେ ଭରି ଦେଇଥିଲା । ଅନିର୍ବାଣ ଏହା ଦେଖି କହିଥିଲା—ଏହି ପାରା ଖୋପରେ ଯିବାଆସିବାର ରାସ୍ତାଟିକୁ ବନ୍ଦ କରିଦେଲ ଯେ !

—ପିଲାଟା ଯେ ନିଃଶ୍ୱାସ ନେଇପାରୁନାହିଁ । କଳର ଧୂଆଁ ତାହାର କଅଁଳ ଫୁସ୍‌ଫୁସ୍‌କୁ କଳା କରି ଦେଉଛି ।

—ଆମେ ସମସ୍ତେ ତ ଏହି ପରିବେଶରେ ବଡ଼ ହେଲୁ ।

—ତୁମେ ବଡ଼ ହୋଇଛ । ମୁଁ ହୋଇନାହିଁ । ଆମର ଚତୁଃପାର୍ଶ୍ୱରେ କେବଳ ସବୁଜିମା ଭରି ରହିଥିଲା । ମୁଁ ଖୋଲା ପବନ ପାଇଛି, ସିଧା ନଦୀରୁ ଉଠିଆସୁଥିବା ପବନ । ସେଇଥିପାଇଁ ଆମର ସେଠି ମଣିଷ ଦୀର୍ଘଦିନ ବଞ୍ଚିରହୁଥିଲେ । ମୋର ଜେଜେ ଶହେ ପାଞ୍ଚବର୍ଷ ବଞ୍ଚିଥିଲେ । ଏପରିକି ସେହି ବୟସରେ ତାଙ୍କ ସହିତ କୁସ୍ତିଲଢ଼ି ପଚିଶ ବର୍ଷର ଯୁବକମାନେ ପରାସ୍ତ ହେଉଥିଲେ ।

ଅନିର୍ବାଣ ସିଗାରେଟ୍‌ରୁ କଳେ ଧୂଆଁ ଛାଡ଼ି କହିଥିଲା—ପଚିଶ ବର୍ଷର ଯୁବକମାନେ ତେବେ ହାରିଯାଉଥିଲେ କିପରି ? ସେମାନେ ତ ସେଠାକାର ଲୋକ, ସେମାନେ କ'ଣ ସେଠାକାର ପବନ ଖାଇ ନଥିଲେ ?

କଲ୍ୟାଣୀ ବିଷଣ୍ଣ ବଦନରେ କହିଥିଲା—ତା' ହୁଏତ ଖାଇଛନ୍ତି, ତଥାପି ଆମ ଘରର କଥା ସ୍ୱତନ୍ତ୍ର ।

—ସେହି କଥା କୁହ । ଅନିର୍ବାଣ ବିଦ୍ରୁପ କରି ହସିଥିଲା ।

ଦୀପେନ ଦୀର୍ଘଶ୍ୱାସ ନିଏ । କୈଶୋରରେ ବୋହୂଚୋରି ଖେଳିବାକୁ ଯାଇ ଦୌଡ଼ିବା ପୂର୍ବରୁ କଲ୍ୟାଣୀ ଯେଉଁପରି ଶ୍ୱାସ ନେଉଥିଲା, ବର୍ତ୍ତମାନ ସେହିପରି ଦୀର୍ଘଶ୍ୱାସ ନେଉଛି । ଏହି ଶ୍ୱାସ ସହ ମୁକ୍ତ ପବନ ଆସେ, ସୁଗନ୍ଧ ଆସେ, କଣ୍ଟାବୁଦାର ସ୍ମୃତି ମଧ ଉଦ୍ଭାସିତ ହୋଇଉଠେ ।

## = ତିନି =

ଅନିର୍ବାଣ ମେଦିନୀପୁରର ଲୋକ । ଖୁବ୍ ମିତବ୍ୟୟୀ । ଟଙ୍କା ହାତକୁ ଆସିଗଲେ କଲ୍ୟାଣୀ ହାତଖୋଲା ଖର୍ଚ୍ଚକରି ପକାଏ ବୋଲି କଲ୍ୟାଣୀ ସହ ତା'ର ମନାନ୍ତର ହୁଏ । ଦୀପେନ ପାଇଁ ଖଣ୍ଡେ ବଦଳରେ ଦୁଇଖଣ୍ଡ ଜାମା କିମ୍ବା ଜୋତା ଯଦି କେବେ କିଣିଆଣେ, ସେ କହେ—କ'ଣ ଦରକାର ଥିଲା, ଅଯଥାରେ ପଇସା ଖର୍ଚ୍ଚ କରିବାରେ ?

—ହୁଏତ କିଛି ପଇସା ଖରଚ କରି ଦେଇଛି । ତୁମର ଏହି କୃପଣ ସ୍ୱଭାବ ଆଉ ସହି ହେଉନାହିଁ । କଲ୍ୟାଣୀ ଅଭିମାନ କରେ ।

—ବାଙ୍ଗାଲମାନେ ବୋଧହୁଏ ଖୁବ୍ ଉଦାର ?

ହଁ, ସେମାନେ ବାସ୍ତବରେ ଉଦାର । ଘରେ କୌଣସି ଭଲପଦାର୍ଥ ରନ୍ଧାହେଲେ ପାଖ ପଡ଼ୋଶୀଙ୍କୁ ନଖୁଆଇ ନିଜେ ଖାଆନ୍ତି ନାହିଁ । କାହା ଗଛରେ ଫଳ ପାଚିଲେ ଅନ୍ୟଙ୍କୁ ନଦେଇ ସେ ଖାଏନାହିଁ । ପୋଖରୀରୁ ମାଛଧରି କେହି ଏକା ଖାଇଥିବା କଥା ମନେପଡୁନାହିଁ । କେତେ ଯେ ମାଛଧରା ହୁଏ; ବଡ଼ ବଡ଼ ଶେଉଳ, ମାଗୁର, କଣ୍ଟିଆ, ଶିଙ୍ଗି, କଉ । ଆହା ସେ ବହୁଦିନ ହେବ ଶୁଖୁଆ ପତୁଆ ଖାଇନାହିଁ । ଶରିଫା ଫ୍ରକ୍ ତିଆରି କରିବା ସମୟରେ ଏକପ୍ରକାର ଦୁଇଟି ତିଆରି କରେ । ଗୋଟିଏ ମୋ ପାଇଁ ଅନ୍ୟଟି ନିଜ ପାଇଁ । ତୁମେ ଝାଡ଼ଗ୍ରାମର ମଣିଷ, ଏସବୁ ତୁମେ ବୁଝିବ କିପରି ? ଅନ୍ୟକୁ ଠକାଇ ନିଜର ପେଟ କିପରି ଭରାଯାଇପାରେ ସେଥିରେ ତୁମ୍ଭେମାନେ ଧୁରନ୍ଧର । ଶରିଫାର ବଡ଼ଭାଇ ହାତୀ ପିଠିରେ ଚଢ଼ି, ଲକ୍ଷେ ଟଙ୍କାର ରୋଶଣି ସରଞ୍ଜାମ ସାଥିରେ ନେଇ ବାହା ହେବାକୁ ଯାଇଥିଲା । ବାହାଘର ଭୋଜି ପାଇଁ ଦୁଇ ହଜାର ଲୋକଙ୍କୁ ନିମନ୍ତ୍ରଣ କରିଥିଲା । ଦୁଇଦିନ ଧରି ଆମେ ବାହାଘର ପାଇଁ ଘର ସଜାଇଥିଲୁ । ଆଉ ତୁମ ବାହାଘରେ–ସର୍ବମୋଟ ଷାଠିଏ କିମ୍ବା ପଞ୍ଚଷଠି ଟଙ୍କା ଖର୍ଚ୍ଚ ହୋଇଥିଲା ।

ଅନିର୍ବାଣ ହସି ହସି ପଚାରେ–ଆଉସବୁ ତୁମେ କ'ଣ କ'ଣ କର ?

–ଝଡ଼ ରାତିରେ ଦଳବାନ୍ଧି କୁଆପଥର ସଂଗ୍ରହ କରୁ । ବର୍ଷାରେ ଭିଜି ଭିଜି ଜ୍ୱର ହେଲେ ପଡ଼ୋଶୀମାନେ କମଳାଲେମ୍ବୁ ଆଉ ଅଙ୍ଗୁର ଧରି ଜ୍ୱର ଦେଖିବା ପାଇଁ ଆସୁଥିଲେ, ଡାକ୍ତର ଡାକି ଆଣୁଥିଲେ, ଶଯ୍ୟା ନିକଟରେ ବସି ମୁଣ୍ଡରେ ପାଣିପଟି ଦେଉଥିଲେ । ତୁମ ଦେଶରେ ଏପରି ପଡ଼ୋଶୀ ପାଇଛ ?

କଲ୍ୟାଣୀର ଆଖି ଆନନ୍ଦରେ ଚିକ୍‌ଚିକ୍ କରିଉଠେ ।

–କୌଣସି ପଡ଼ୋଶୀଙ୍କ ସହ ପ୍ରେମ-ଫ୍ରେମ ହୋଇନାହିଁ ?

–ଏକଥା କାହିଁକି ଜାଣିବାକୁ ଚାହୁଁଛ ?

–ଏତେ ପ୍ରେମ କ'ଣ ବ୍ରହ୍ମପୁତ୍ର ପାଇଁ ନା କୌଣସି ମନୁଷ୍ୟପୁତ୍ର...

–ତୁମେ କ୍ରିଟିସାଇଜ କରୁଛ ?

–ନା, ଠିକ୍ ତାହା ନୁହଁ ।

ବାସ୍ତବରେ ତୁମକୁ ବୁଝାଇବାର ଉପାୟ ନାହିଁ ଅନିର୍ବାଣ, ଏଠାକୁ ଆସିବାପରେ ବହୁ ମଣିଷଙ୍କ ସହ ଦେଖା ହେଲା, କାହିଁ ଆମ ଦେଶପରି ଜଣେ ସହଜ ସରଳ ମଣିଷ ତ ଦେଖିବାକୁ ପାଇଲି ନାହିଁ ।

—ଏତେ ଯଦି ଭଲ, ତେବେ ଦେଶଛାଡ଼ି ଆସିଲ କାହିଁକି ?

—ଏଠାକୁ କ'ଣ ସଉକରେ ଆସିଛି ?

ଅନିର୍ବାଣ ତାକୁ ମଝିରେ ମଝିରେ ଚିଡ଼ାଇବା ପାଇଁ ଏପରି କୁହେ । କୁହେ—ତୁମ ଗଛର ପିଜୁଳି ତ ଲୋକମାନେ ଚୋରିକରି ଖାଇଯାଉଥିଲେ ।

—ସେ ତ ଲକ୍ଷ୍ମୀପୂଜା ସମୟରେ ।

—ପରିମଳ କହୁଥିଲା କିଏ ସବୁ ତୁମ ଘର ଉପରକୁ ଢେଲା ଫୋପାଡ଼ନ୍ତି ।

—ବାଜେ କଥା । ଢେଲା ପକାଇବେ କାହିଁକି ? କଲ୍ୟାଣୀ ଭ୍ରୂକୁଞ୍ଚନ କରି ଉତ୍ତର ଦିଏ ।

—ପଡ଼ୋଶୀମାନେ ନା କ'ଣ ? ଅନିର୍ବାଣ ପୁଣି ପ୍ରଶ୍ନକରେ ।

—ପରିମଳ ଡାହାମିଛ କୁହେ । ପଡ଼ୋଶୀମାନେ ଢେଲା ପକାଇବେ ? ପାରିଲେ ଜୀବନ ଦେଇଦେବେ ।

—ଚୌଷଠି ମସିହା ଦଙ୍ଗାରେ ତୁମର କିଛି ହୋଇନାହିଁ ?

—ଏ ଦଙ୍ଗା ତ ବଙ୍ଗାଳୀ-ବିହାରୀଙ୍କ ମଧ୍ୟରେ ହୋଇଥିଲା । ବଙ୍ଗାଳୀ ବଙ୍ଗାଳୀଙ୍କ ମଧ୍ୟରେ କିଛି ହୋଇନଥିଲା । ମଫସଲରେ ବୋଧହୁଏ କାଁଭାଁ କିଛି ଘଟିଥିଲା, ଆମେ ସେ ସମ୍ପର୍କରେ କିଛି ଜାଣିନାହୁଁ ।

—ତୁମେ ସେତେବେଳେ କଲିକତାରେ ଥିଲ, ନା ?

—କଲିକତାରେ, ହଁ ସେଥିରେ କ'ଣ ଯାଏଆସେ ? ବାପା ମା' ସେଠାରେ ଥିଲେ, ଯେତେବେଳେ ଯାହା ଘଟୁଥିଲା ଖବର ପାଇଯାଉଥିଲି ।

ତିରିଶ ବର୍ଷ ଧରି କଲ୍ୟାଣୀ ନିଜ ଅନ୍ତର ମଧ୍ୟରେ ଗଛଲତାଘେରା ଛାୟା ଆଚ୍ଛାଦିତ ଗୋଟିଏ ଦୋମହଲା କୋଠାଘର ସାମ୍ନାରୁ ଅପରପାର୍ଶ୍ୱ ଦେଖାଯାଉ ନଥିବା ଏପରି ଏକ ବିଶାଳ ସ୍ରୋତସ୍ୱିନୀ ବ୍ରହ୍ମପୁତ୍ରକୁ ସଯତ୍ନ ପାଳନ କରିଆସିଛି । ବ୍ରହ୍ମପୁତ୍ର କୂଳରେ ବାଲିଘର କରି ବା ପାଣି ଚବଚବ କରି ଖେଳିବା, ଦିଗନ୍ତ ଅଭିମୁଖେ ଊର୍ଦ୍ଧ୍ୱଶ୍ୱାସ ହୋଇ ଦୌଡ଼ିବା, ସାଇଁ ସାଇଁ ପବନରେ କେଶମୁକ୍ତ କରି ଉଡ଼ାଇବା ଆଉ ସନ୍ଧ୍ୟାବେଳକୁ ଧୂଳିଧୂସରିତ ହୋଇ ଘରକୁ ଫେରିବା ଏବେବି ତା'ର କାଲିର ଘଟଣା ପରି ମନେହୁଏ । ଏବେବି ତା'ର ମାନସିକ ସ୍ତରକୁ ଘନିଷ୍ଠ ଭାବରେ ଆଲିଙ୍ଗନ କରେ । ଉଷାକାଳରେ

ଫୁଲ୍‌କାନିରେ ଗଙ୍ଗଶିଉଳି ଗୋଟାଇବା, ପୂର୍ବାହ୍ଣରେ ଦଳ ବାନ୍ଧି ରାଧାସୁନ୍ଦରୀ ସ୍କୁଲ ଦିଗକୁ ଚାଲି ଚାଲି ଯିବା, ଦୁଇପଇସାରେ ମଲାଇ ଆଇସ୍‌କ୍ରିମ୍ କିଣିବା, ଘୁଙ୍ଗୁର ପିନ୍ଧି ଝିମ୍ ଝିମ୍ କରି ଚାଲିଯାଉଥିବା ଚେନାଚୂରବାଲାକୁ ଭୁଲାଇ ବାକିରେ ଠୁଙ୍ଗାଏ ଚେନାଚୂର ଖାଇବା, କାଠବାକ୍‌ସରେ ଆଖିଲଗାଇ ବାଇସ୍କୋପ ଦେଖିବା, ଶୀତଦିନ ରାତିରେ ପଡ଼ିଆରେ ଇଟା ପକାଇ ବସି ପବ୍ଲିସିଟି ଡିପାର୍ଟମେଣ୍ଟର ବାକ୍‌ଶକ୍ତିହୀନ ସିନେମା ଦେଖିବା ଭଳି ଅନେକ ଅତୀତ ଦିନର ଅଭୁଲା ସ୍ମୃତି ।

ଦୀପେନର ସ୍କୁଲରେ ଗ୍ରୀଷ୍ମାବକାଶ । ସେ ତା' ମାଆଙ୍କ ସହିତ ଅଜାଘରକୁ ଯିବାପାଇଁ ଜିଦ୍ ଧରିଛି । କଲ୍ୟାଣୀ ମନେ ମନେ ଭାବୁଥିଲା ଅନିର୍ବାଣ ମଧ୍ୟ ଯିବ । ଅଥଚ ଅନିର୍ବାଣ ଏ ଦିଗରେ କୌଣସି ଆଗ୍ରହ ଦେଖାଇନି, ଏତେ ଗଳ୍ପ ଶୁଣିଛି, କଲ୍ୟାଣୀ କିଛିଟା ଆନମନା ହେଲେ କହିଛି 'ବୋଧହୁଏ ଘରକଥା ଭାବୁଛ, ସତରେ ତୁମର ସେହି ଅଟ୍ଟାଳିକା, ବାଡ଼ିବଗିଚା ଆଦି ଦେଖିବାକୁ ମୋର ଖୁବ୍ ଇଚ୍ଛା ହୁଏ'—ଅବଶ୍ୟ ସେ ସମ୍ପର୍କରେ କିଛିଟା ବଢ଼େଇକରି କହିଛି, ତଥାପି ତ କହିଛି—ଇଚ୍ଛାକଲେ ବୁଲିଆସିପାରନ୍ତା, ଶରିଫାଙ୍କ ଘରେ ରହିବା, ଅନିଲକକା, ସୌମେନ, ମୁନ୍ନି, ସେଲିମ, ରୁଖସାନାଙ୍କ ସହିତ ଦେଖାହେବା, ଏତଦ୍‌ଭିନ୍ନ କଲ୍ୟାଣୀର ଘରଦ୍ୱାର କେଉଁଠାରେ ଥିଲା, କିପରି ଥିଲା ତା'ର ଶୈଶବ କୈଶୋର—ତା'ର ଖେଳପଡ଼ିଆ, ନଦନଦୀ—ଅନିର୍ବାଣ ତ ପ୍ରତ୍ୟେକ ବର୍ଷ ପୁରୀ ଯାଏ, ଥରେ ଯାତ୍ରାର ଦିଗ ପରିବର୍ତ୍ତନ କରିଦେଲେ କ'ଣ ହୁଅନ୍ତା ! ମାତ୍ର ଅଧଘଣ୍ଟାଏ ସମୟ ଉଡ଼ାଣର ଦୂରତ୍ୱ । ହାଓଡ଼ା ଯିବାକୁ ହେଲେ ଏହାଠାରୁ ଅଧିକ ସମୟ ଲାଗେ । କଲ୍ୟାଣୀ ଯେଉଁଦିନଠାରୁ ସ୍କୁଲରୁ ବେତନ ପାଇବା ଆରମ୍ଭ କଲା, ନିଜ ବେତନ ଉପରେ କିଛି ଦାବି କରାଯାଏ ବୋଲି ସେ ମନେକଲା, ସେହିଦିନଠାରୁ ସେ ସମୟେ ସମୟେ କହୁଥିଲା 'ଚାଲ ଯିବା, ଚାଲନା ଦିନେ ଯିବା ।' ସେ ତ ଆଜିକାର କଥା ନୁହେଁ, ଜୟିଷାର ଜନ୍ମ ପୂର୍ବରୁ କହିଆସୁଛି, ଆଉ ସେହି ଜୟିଷାର ବର୍ତ୍ତମାନ ଅଠରବର୍ଷ ବୟସ । ଅନିର୍ବାଣ ପ୍ରଥମାବସ୍ଥାରେ କହୁଥିଲା—ଘରଦ୍ୱାରର ଦାୟିତ୍ୱ ପକାଇଦେଇ କିପରି ଯିବ କୁହ ତ, କିଏ ଏ ସମସ୍ତ ଦାୟିତ୍ୱ ନେବ ? ପରେ କହିଥିଲା—'ପିଲାଟା ଆହୁରି ବଡ଼ ହୋଇଯାଉ, ଯିବ ।' ପିଲାଟି ବଡ଼ ହେବା ପରେ କହିଥିଲା—'ପାସ୍‌ପୋର୍ଟ, ଟିକେଟର ଝମେଲା—ଅଯଥାରେ ଏତେ ପଇସା ଖର୍ଚ୍ଚ କରିବ କାହିଁକି, କ'ଣ ବା ଦେଖିବାର ଅଛି ସେଠାରେ କହିଲ, କେହି ନାହିଁ, କିଛିନାହିଁ, ରାସ୍ତାଘାଟ ମଧ୍ୟ ଚିହ୍ନିପାରିବ ନାହିଁ, ବରଂ ଯିବାର ଚିନ୍ତା ଭୁଲିଯାଅ ।' ଅନିର୍ବାଣ କ'ଣ ବୁଝିବ—ସେଠାରେ କ'ଣ ଅଛି ଆଉ କ'ଣ ନାହିଁ । ସେ ଆହୁରି ମଧ୍ୟ କହିଥିଲା—

'ବୁଲିଯିବାକୁ ଚାହୁଁଛ ତ ଦାର୍ଜିଲିଂ ଯାଇ ବୁଲିଆସ, ଭଲ ଲାଗିବ ।' କଲ୍ୟାଣୀ ଏହା ଶୁଣି ହସେ । ଶେଷରେ ଅନିର୍ବାଣ କହିଥିଲା—'ତୁମର ସେଠାକୁ ଯିବା ଠିକ୍ ହେବନାହିଁ । ପଲିଟିକାଲ ସିଚୁଏସନ ଭଲ ନୁହେଁ ।' କଲ୍ୟାଣୀ ବୁଝିଥିଲା ଅନିର୍ବାଣ କୌଣସି ଦିନ ତାକୁ କହିବନାହିଁ ଚାଲ ଯିବା କିମ୍ବା ଯାଅ ଥରେ ବୁଲିଆସ । ଶେଷରେ କଲ୍ୟାଣୀ ଯେତେବେଳେ ସିଦ୍ଧାନ୍ତ ଗ୍ରହଣ କଲା ସେ ଯିବ ହିଁ ଯିବ, ଅନିର୍ବାଣ ପ୍ରଥମେ ହଁ କି ନା କିଛି କହିନଥିଲା, ପରେ କହିଥିଲା—'ଛୁଟି ପାଇଥିଲେ ମୁଁ ନିଶ୍ଚୟ ତୁମ ସହିତ ଯାଇଥାନ୍ତି, ଅଫିସରେ ରାଜ୍ୟସାରା ସମସ୍ତ ପ୍ରକାର ଝମେଲା, ତୁମେ ବରଂ ଦୀପେନକୁ ସାଥିରେ ନେଇକରି ଯାଅ । ଆଗକୁ ଜୟିଷାର ଏମ୍.ଏ. ଫାଇନାଲ, ମୁଁ ଗଲେ ତାକୁ ଏକାକୀ ଲାଗିବ ।' ଇଚ୍ଛା କରିଥିଲେ ଅନିର୍ବାଣ ସାଥିରେ ଯାଇପାରିଥାନ୍ତା । ମୟମନସିଂହ ସମ୍ପର୍କରେ ତା'ର କୌଣସି ଆଗ୍ରହ ନଥିବାରୁ ହୁଏତ ସେ ରାଜି ହୋଇନଥିଲା । ଅନିର୍ବାଣ କିନ୍ତୁ କଲ୍ୟାଣୀକୁ ଝାଡ଼ଗ୍ରାମ ନେଇଯାଏ, ସେଠାରେ ତାକୁ ବୁଲାଇ ଦେଖାଏ—ଏହା ହେଉଛି ମୋର ଶୋଇବା ଘର, ଏଇ ପଡ଼ିଆରେ ଖେଳିଛି, ସେ ଯେଉଁ ନାଲି ଇଟାର କାନ୍ଥ ଦେଖୁଛ ତାହା ମୋର ସ୍କୁଲ ଥିଲା । ଏଇ ଯେଉଁ ଆମ୍ବ ବଗିଚା ଦେଖୁଛ ଏଠାରେ ବସି ଆମେ ଗୀତ ଗାଉଥିଲୁ । କଲ୍ୟାଣୀ ମୁଗ୍ଧ ହୋଇ ନିଷ୍ପଲକ ନେତ୍ରରେ ଅନିର୍ବାଣର ଶୈଶବ ଓ କୈଶୋରକୁ ଉପଭୋଗ କରିବାରେ ଲାଗୁଥିଲା ।

ସମ୍ପ୍ରତି କଲ୍ୟାଣୀ ଟାଲିଗଞ୍ଜ ଛାଡ଼ି ବିଧାନ ସରଣୀ ସ୍କୁଲରେ ଶିକ୍ଷାଦାନ କରେ । ସଲ୍ଟଲେକ୍‌ଠାରେ ସ୍ଥାୟୀ ହେବା ପରେ ଏହି ସ୍କୁଲକୁ ଆସିଛି । ପୂର୍ବାପେକ୍ଷା ଏଠାକାର ବେତନ ମଧ୍ୟ ଭଲ । ଘରଖର୍ଚ୍ଚ କରିବା ବ୍ୟତୀତ ସେ କିଛି ସଞ୍ଚୟ କରେ । ଛଅମାସ ସଞ୍ଚୟ କରିବା ପରେ ଦୁଇଟି ପାସ୍‌ପୋର୍ଟ, ଦୁଇଟି ଟିକେଟ ଆଉ ଏକଶହ ଡଲାର ପର୍ଯ୍ୟନ୍ତ ଯୋଗାଡ଼ କରିପାରିଛି । ଅନିର୍ବାଣ ନିକଟରୁ ଟଙ୍କାଟାଏ ବି ଆଶା କରିନାହିଁ । ଆଶା କରିଥିଲେ ହୁଏତ ନାହିଁ କରିନଥାନ୍ତା । କଲ୍ୟାଣୀ ଭାବିଥିଲା ଯିବା ପୂର୍ବରୁ ହୁଏତ ଅନିର୍ବାଣ ସ୍ୱେଚ୍ଛାକୃତ ଭାବେ କିଛି ଦେବ । ତା'ଠାରୁ ଦୁଇ ହଜାର ଭଳି ପାଇଥିଲେ ଜୟିଷାକୁ ହୁଏତ ସାଥିରେ ଅଣାଯାଇ ପାରିଥାନ୍ତା । କଲ୍ୟାଣୀ ପନ୍ଦର ଦିନ ପାଇଁ ଛୁଟି ନେଇଛି । ଅନିର୍ବାଣ ଏହା ଶୁଣିବା ପରେ ବିସ୍ମୟରେ ଚାହିଁ କହିଥିଲା—'ତୁମର କ'ଣ ମୁଣ୍ଡ ଖରାପ, ତୁମେ ଏତେଦିନ ବିଦେଶରେ ରହିବ ?' ଅନିର୍ବାଣର ଭୁଲ ସୁଧାରି ନେଇ ସେ କହିଥିଲା—ବିଦେଶରେ ନୁହେଁ, ମୋ ଦେଶରେ ରହିବି ।

—ଏକା ଯିବ ନା କ'ଣ ?

—ଦୀପେନକୁ ନେବି ।

—ଆଗରେ ଦୀପେନର ପ୍ରିଟେଷ୍ଟ ଥିଲା ନା କ'ଣ ?

—ତାହା ଡେରି ଅଛି । ଆହୁରି ଅଢ଼େଇ ମାସ ବାକି ।

—ବାଂଲାଦେଶ ଯିବ, ଆଜିକାଲି କେହି ସେ ଦେଶକୁ ଯାଏ ? ତା'ଛଡ଼ା ମୁଁ ବୁଝିପାରୁନାହିଁ ସେଠାରେ ତୁମର କିଏ ଅଛି ଯେ ଯିବାକୁ ଚାହୁଁଛ ।

—ତୁମେ ସେକଥା ବୁଝିପାରିବ ନାହିଁ ଅନିର୍ବାଣ ।

—ତୁମର କଥାହିଁ କେବଳ ତୁମେ ବୁଝ । ମୋତେ ଆଉ କ'ଣ ବୁଝିବାକୁ ଦେବ ? ନିଜେ ଯାହା ଭଲ ମନେକରୁଛ କର । ମୋର ବା ଯାଏଆସେ କେତେ ?

—ତୁମର କିଛି ନାହିଁ ? ଏତେଦିନ ପର୍ଯ୍ୟନ୍ତ ତ ସମସ୍ତ କ୍ଷେତ୍ରରେ ତୁମର କିଛି ଥିଲା । ଯେତେବେଳେ ମୋର ଘରକୁ ଯିବାର ସମୟ ହେଲା ସେତେବେଳେ କହୁଛ କ'ଣ ନା ତୁମର କିଛିନାହିଁ ?

—ତୁମର ଘର ନା କ'ଣ ? କିଏ ତୁମ ପାଇଁ ସେଠାରେ ଘର ସଜାଇ ରଖିଛି ଶୁଣେ ?

—ପୁଣି ଥରେ କହୁଛି ଅନିର୍ବାଣ, ତୁମେ ସେସବୁ ବୁଝିପାରିବ ନାହିଁ । ଏଇଟା ତୁମର ଝାଡ଼ଗ୍ରାମ ନୁହେଁ ଯେ ତୁମେ ନାହଁ ବୋଲି ସବୁକିଛି ନିଶ୍ଚିହ୍ନ ହୋଇଯିବ ।

—ଠିକ୍ ଅଛି ଯାଅ, ତୁମର ଇଚ୍ଛା ପୂରଣ କର ।

ତାହା ତ ଅବଶ୍ୟ ପୂରଣ କରିବି । କାହିଁକି ଯେ ଭାବ ମୋର କୌଣସି ଆଗ୍ରହ ବା ଆବେଗ ନାହିଁ ବୋଲି ? କାହିଁକି ଭାବ ମୋର ଘରଦ୍ୱାର ନାହିଁ । ଭିଟାମାଟି ନାହିଁ । ତୁମେ ଯେପରି ତୁମର ମା'ଙ୍କୁ ଦେଖିବା ପାଇଁ ମାସ ପରେ ମାସ ଝାଡ଼ଗ୍ରାମ ଯାଅ, ମୋର ତ ପୁଣି କେଉଁଠାକୁ ହେଲେ ଯିବାପାଇଁ ଆଗ୍ରହ ରହିଛି । ମୁଁ ତ ପୁଣି କାହାକୁ ଦେଖିବା ପାଇଁ ଆଗ୍ରହୀ ।

—ତୁମର ମା' ତ ଆଉ ନାହାନ୍ତି, ସେ ଥିଲେ କିଛି କହିବାର ନଥିଲା ।

—ମା' ମରିଯାଇଛନ୍ତି ଏହା ସତ୍ୟ । ତେବେ କ'ଣ ମା' ରଖିଯାଇଥିବା ଜିନିଷପତ୍ର କିଛି ନାହିଁ ? ଶରିଫା ନିଶ୍ଚୟ କିଛି-ନା-କିଛି ପ୍ରିଜର୍ଭ କରି ରଖିଥିବ । ତା'ଛଡ଼ା ଅନିଲକକା କ'ଣ ଘରଟାକୁ ହେପାଜତରେ ରଖି ନଥିବେ !

କଲ୍ୟାଣୀ ବୁଝିପାରେ ନାହିଁ ଅନିର୍ବାଣ ଏତେ ନାସିକା କୁଞ୍ଚନ କରେ କାହିଁକି ? ସେ କ'ଣ ତେବେ ଈର୍ଷା କରେ ? ହୋଇପାରେ । ଈର୍ଷା ଭିନ୍ନ ଏହାକୁ ଅନ୍ୟ କ'ଣ ବା କୁହାଯାଇପାରିବ ? କଲ୍ୟାଣୀ ତା'ର ଅନ୍ତରର ସ୍ୱପ୍ନ ତିରିଶବର୍ଷ ଧରି ହୃଦୟ ମଧ୍ୟରେ ସାଇତି ରଖିଛି । ବାହାଘର ହେଲା, ଝିଅ ହେଲା, ସେହି ଝିଅ ସ୍କଟିସଚର୍ଚ୍ଚ କଲେଜରେ ଏମ୍.ଏ. ପଢୁଛି । କଲ୍ୟାଣୀର ସାଂସାରିକ ଜଞ୍ଜାଳ ଅନେକ ପରିମାଣରେ କମିଯାଇଛି । ଏହାସତ୍ତ୍ୱେ ବି କେଉଁଠାକୁ ହେଲେ ଯିବାପାଇଁ ତାକୁ ସମୟ ମିଳେନାହିଁ । ସଂସାର ତାକୁ ଏହିପରି ଭାବରେ ବାନ୍ଧିରଖିଛି । ବାସ୍ତବରେ କହିବାକୁ ଗଲେ ଅନିର୍ବାଣର ଏକଜିଦିଆ ସ୍ୱଭାବ ତାକୁ ଏତେଦିନ ଧରି ସଂସାର ଓ ସୀମାନ୍ତ କେଉଁଟାକୁ ହେଲେ ପାରହେବାକୁ ଦେଇନାହିଁ । କେଶ ବିନ୍ୟାସ କରିବାକୁ ଗଲେ କଲ୍ୟାଣୀ ଆଜିକାଲି ନିଜ ମୁଣ୍ଡରେ ପକ୍ୱକେଶ ଦେଖିବାକୁ ପାଏ । ତା'ର ଅନ୍ତର ଥରିଉଠେ, ତେବେ କ'ଣ ତା'ର ସମୟ ଶେଷ ହୋଇଆସୁଛି ? ତେବେ କ'ଣ ତାକୁ ଧୀରେ ଧୀରେ ଶ୍ମଶାନ ଅଭିମୁଖେ ଆଗେଇ ଯିବାକୁ ହେବ ? ଶ୍ମଶାନ ଶବ୍ଦଟି ଶୁଣିଲେ ତା'ର ଶରୀରର ସମସ୍ତ ଅଙ୍ଗପ୍ରତ୍ୟଙ୍ଗରେ କମ୍ପନ ସୃଷ୍ଟିହୁଏ । କେଉଁ ଶ୍ମଶାନକୁ ସିଏ ଯିବ—କେଓଡ଼ାତାଲା, ନିମତଲା ନା ବ୍ରହ୍ମପୁତ୍ର ଧାରରେ ଶମ୍ଭୁଗଞ୍ଜ ବ୍ରିଜ ତଳେ ଯେଉଁ ଶ୍ମଶାନ, ସେଠାକୁ ? ଯେଉଁଠାରେ ପିତାମହ, ପିତାମହୀ, ବଡ଼ବାପା, ବାପା, ଦାଦା, ମା'ଙ୍କ ଚିତା ଜଳିଥିଲା । ସମୟେ ସମୟେ ସେ ଅନିର୍ବାଣକୁ କୁହେ—ମୁଁ ମରିଗଲେ ମୋର ମରଦେହକୁ ସେହିଠାରେ ରଖିଆସିବ ।

ଅନିର୍ବାଣ କୁହେ—ସେଠାରେ ମାନେ ?

—ସେଠାରେ ମାନେ ଜନ୍ମ ଯେଉଁଠାରେ । ଜନ୍ମ ଓ ମୃତ୍ୟୁ ଗୋଟିଏ ମାଟିରେ ହେବାହିଁ ଭଲ ।

—ମରିଗଲା ପରେ ତୁମେ ତ ଆଉ ମଣିଷ ହୋଇ ନଥିବ । ମସ୍ତବଡ଼ ଏକ ବୋଝ ହୋଇଯାଇଥିବ । ତୁମେ କିପରି ଭାବିଲ ଯେ ସେହି ବୋଝକୁ କାନ୍ଧରେ ଧରି ଗୋଟିଏ ଦେଶରୁ ଅନ୍ୟ ଏକ ଦେଶକୁ ଯାଇହେବ !

—ଅନ୍ୟ ଏକ ଦେଶ, ଅନ୍ୟ ଏକ ଦେଶ ବୋଲି କୁହନା ଅନିର୍ବାଣ । ରାଗ ହେଉଛି ।

—ତେବେ କ'ଣ ସ୍ୱଦେଶ ବୋଲି କହିବି ?

—ସେଦିନ ତ ଅଗରତାଲାଠାରୁ କୁମିଲ୍ଲା ପର୍ଯ୍ୟନ୍ତ ଚାଲିଚାଲି ଆସିଲ, ମାଟିର କୌଣସି ଭିନ୍ନ ରଙ୍ଗ ଦେଖିଲ ? ଘାସର ରଙ୍ଗ ? ଭିନ୍ନ ଭାଷା ପାଇଲ ? ପୋଷାକ-ପରିଚ୍ଛଦ ? ନିଜେ ହିଁ କହିଥିଲ ସେପଟ ଗଛର ଫୁଲ ଏପଟରେ ଝରିପଡୁଛି । ସେପଟର

ପକ୍ଷୀ ଏପଟକୁ ଉଡ଼ିଆସୁଛି । ଦୁଇପଟର ଗୋରୁ, ଛେଳି ଦୁଇପଟକୁ ବିନା ବାଧାରେ ଯିବାଆସିବା କରିବାରେ ଲାଗିଛନ୍ତି । କେବଳ ମାତ୍ର ମଣିଷ କ୍ଷେତ୍ରରେ ଯେ ଆପତ୍ତି ଉଠୁଛି ସେକଥା ତ ବୁଝିଆସିଲ । ଏହାସତ୍ତ୍ୱେ ବି ସମୟ ପାଇଲେ ଭିନ୍ନ ଭିନ୍ନ ବୋଲି କହୁଛ କାହିଁକି ?

—ତୁମେ କ'ଣ ଇତିହାସକୁ ଅସ୍ୱୀକାର କରିବାକୁ ଚାହଁ ? ଅନିର୍ବାଣ ଚଷମାଟି ଖୋଲି ଟେବୁଲ ଉପରେ ରଖେ । ଆଜିକାଲି ଉତ୍ତେଜିତ ହୋଇପଡ଼ିଲେ ସେ ଆଖିରେ ଚଷମା ରଖେନାହିଁ ।

ପାଖରେ ଥିବା ଏକଶହ ଡଲାରକୁ ଭଙ୍ଗାଇ କଲ୍ୟାଣୀ ଟଙ୍କା କରି ନେଲା । ଟ୍ୟାକ୍‌ସି ଚାଳକ ଓ ସ୍କୁଟର ବାହକମାନେ ତାକୁ ଘେରିଗଲେ । କିପରି ଭାବରେ ମୟମନସିଂହ ଯିବାକୁ ହେବ ପଚାରିବାରୁ ସଭିଏଁ ଏକସ୍ୱରରେ କହିଲେ—ମହାଖାଲିଘ ବସ୍‌ଷ୍ଟାଣ୍ଡଠାରୁ ବସ୍ ଯୋଗେ ଯିବାକୁ ପଡ଼ିବ, ବସ୍ ସିଧା ମୟମନସିଂହ ଯିବ । କେଉଁଠାରେ ହେଲେ ରହିବ ନାହିଁ । ସେ ଗୋଟିଏ ସ୍କୁଟର ଧରି ବସ୍‌ଷ୍ଟାଣ୍ଡକୁ ଗଲା । ପୂର୍ବରୁ ସେ ସେଠାକାର କାହାରିକୁ ଜଣାଇ ନଥିଲା । ଏପରିକି ଖଣ୍ଡିଏ ପୋଷ୍ଟକାର୍ଡ଼ ମଧ୍ୟ ପଠାଇ ନଥିଲା । କଲ୍ୟାଣୀ ଆସିଛି ଜାଣିଥିଲେ ଏମାନଙ୍କ ମଧ୍ୟରୁ ଜଣେହେଲେ କେହି ରିସିଭ କରିବା ପାଇଁ ଏୟାରପୋର୍ଟକୁ ନିଶ୍ଚୟ ଆସିଥାନ୍ତେ । ସବୁଠାରୁ ଭଲ, ହଠାତ୍ ପହଞ୍ଚି ସମସ୍ତଙ୍କୁ ବିସ୍ମୟାଭିଭୂତ କରି ପକାଇବା । ଦୀର୍ଘଦିନ ପରେ କଲ୍ୟାଣୀକୁ ଦେଖି ପଡ଼ାରେ ନିଶ୍ଚୟ ହଇଚଇ ପଡ଼ିଯିବ । ମାତ୍ର କେତେଟା ଦିନ ପାଇଁ ସେ ଆସିଛି, ତାକୁ କେନ୍ଦ୍ର କରି ପରସ୍ପର ମଧ୍ୟରେ ତାକୁ ଘରକୁ ନେବାପାଇଁ ଯେ ଟଣାଓଟରା ନହେବ ଏକଥା କହିହେବ ନାହିଁ । ଥରେ ସେ ଚଟ୍ଟୋଗ୍ରାମର ମାଉସୀଙ୍କ ଘରକୁ ବୁଲିଯାଇଥିଲା, କଥାଥିଲା ସେ ସେଠାରେ ଏକମାସ ରହିବ । ମାତ୍ର ତେର ଦିନ ପରେ ତାକୁ ଫେରି ଆସିବାକୁ ହୋଇଥିଲା କାରଣ ମୟମନସିଂହଠାରୁ ଖବର ଗଲା ଶରିଫାର ଖାଇବା ପିଇବା ବନ୍ଦ, ତାକୁ କିଛି ଭଲଲାଗୁନାହିଁ । ଫେରିଆସିବା ପରେ ତେର ଦିନର ଅନୁପସ୍ଥିତଜନିତ ଶୋକ ଦୂର କରିବା ପାଇଁ ଦୁଇମାସ ଭଳି ସମୟ ଲାଗିଯାଇଥିଲା । ଚଟ୍ଟୋଗ୍ରାମରେ କ'ଣ କ'ଣ ଦେଖିଲା—ପତେଙ୍ଗାବିଚ୍, ଫୟେଜଲେକ୍, ପୋର୍ଟ, ପାହାଡ଼—ସବୁ ବିଷୟରେ ଗଳ୍ପ କରିବାକୁ ହୋଇଥିଲା । ଜାମୁଗଛ ଛାଇରେ ଘାସ ଉପରେ ଶୋଇ ଆକାଶର ମେଘ ଦେଖୁ ଦେଖୁ ସେମାନେ କେତେ କଥା କୁହନ୍ତି, ତଥାପି କଥା ଶେଷ ହୁଏନାହିଁ । ଦୀର୍ଘ ତିରିଶ ବର୍ଷର କାହାଣୀକୁ ତେବେ ସେ କେତେ ଦିନରେ ଶେଷ କରିବ ?

ଯେଉଁଦିନ କଲ୍ୟାଣୀକୁ ଦେଶଛାଡ଼ି ଆସିବାକୁ ପଡ଼ିଥିଲା, ସେଦିନ ଶରିଫା ଧୂଳିରେ ଲୋଟି କାନ୍ଦିଥିଲା । ସେ ତା'ର ଦେହ ଛୁଇଁ କହିଥିଲା ଯେପରି ହେଉ ସେ ଦିନେ-ନା-ଦିନେ ନିଶ୍ଚୟ ଫେରିଆସିବ । ଆଜି ଶରିଫା ତାକୁ ସମ୍ମୁଖରେ ଦେଖି କ'ଣ ନିର୍ବାକ୍ ହୋଇଯିବ ନାହିଁ ? ଜୀବନର ଶେଷ ମୁହୂର୍ତ୍ତରେ ଏହା ତା'ର କିପରି ପ୍ରତ୍ୟାବର୍ତ୍ତନ—ଭାବି ଭାବି କଲ୍ୟାଣୀର ଚକ୍ଷୁ ଲୋତକାପ୍ଲୁତ ହୁଏ । ସ୍କୁଟରରେ ବସି ଦୀପେନକୁ ନିଜ ଛାତିରେ ଜାବୁଡ଼ି ଧରି କଲ୍ୟାଣୀ କୁହେ—ଦୀପେନ, ଜାଣିଛୁ ତ ଏହା ହେଉଛି ମୋର ପ୍ରିୟ ଦେଶ ? ଦୀପେନ ମୁଣ୍ଡ ହଲାଏ, ଏହାର ଅର୍ଥ ସେ ଜାଣିଛି । କଲ୍ୟାଣୀର ଦେହରେ କମ୍ପନ, କଣ୍ଠ ଶୁଖିଆସୁଛି, ପାଣି ପିଇବା ତା' ପାଇଁ ବିଶେଷ ଦରକାର । ଦେଶର ପାଣି । ଦୀପେନର ମୁହଁ ତଥା ଆଖି ଆନନ୍ଦରେ ନାଚିଉଠିଲା, କହିଲା—ଦେଖୁଛ ମା', ଗାଡ଼ିର ନମ୍ବର ପ୍ଲେଟଗୁଡ଼ିକ ମଧ୍ୟ ବଙ୍ଗଳାରେ ଲେଖାହୋଇଛି । ଆହୁରି ମଧ୍ୟ ସାଇନ୍‌ବୋର୍ଡ଼ଗୁଡ଼ିକ ବଙ୍ଗଳାରେ ।

—ହଁ, ତାହା ତ ରହିବ । ଏଠାରେ ସମସ୍ତେ ବଙ୍ଗଳାରେ କଥା କୁହନ୍ତି । ସମସ୍ତେ ବଙ୍ଗାଳୀ ।

—ସମସ୍ତେ ବଙ୍ଗାଳୀ ? ଆମ୍ଭମାନଙ୍କର ସେଠାରେ ସମସ୍ତେ ତ ବଙ୍ଗାଳୀ ନୁହନ୍ତି !

—ତୋତେ କହିନାହିଁ ଏ ଦେଶର ଜନସାଧାରଣ ବାଉନ ମସିହାରେ ଭାଷା ଆନ୍ଦୋଳନ କରିଥିଲେ ? ଏକସ୍ତରିରେ ଯୁଦ୍ଧ କରିଥିଲେ ? ଯେପରି ସମସ୍ତେ ବଙ୍ଗଳାରେ କଥା କହିପାରିବେ, ସେଥିପାଇଁ ତ ଯୁଦ୍ଧ କରିଥିଲେ । କହୁ କହୁ ଏହି ଦେଶର ମଣିଷମାନଙ୍କ ପ୍ରତି ଭକ୍ତିରେ ତା'ର ମୁଣ୍ଡ ନଇଁଯାଏ ।

—ତେବେ ଆମ୍ଭେମାନେ କାହିଁକି ଯୁଦ୍ଧ କରୁନା ? ଦୀପେନ ପ୍ରଶ୍ନ କରେ ।

—କେମିତି କରିବେ, ସେଇଟା ଅନେକ ବଡ଼ ଦେଶ ! ଅନେକ ଭାଷା, ଅନେକ ମଣିଷ !

ଚତୁର୍ଦ୍ଦିଗକୁ ଦୀପେନ ମୁଗ୍ଧ ନେତ୍ରରେ ଚାହିଁ କୁହେ—ନୂଆ ଏକ ଦେଶକୁ ଆସିଛି ବୋଲି ମନେହୁଏ ନାହିଁ, ଏଇଆ ନା ମା ?

ଦୀପେନର ବିସ୍ମୟ ଓ ଆନନ୍ଦ ଦେଖି କଲ୍ୟାଣୀ ତାକୁ ଆହୁରି ନିବିଡ଼ ଭାବରେ କୁଣ୍ଢାଇ ଧରେ । ଯେପରି ଏହା ହେଉଛି ତା'ର ଅବୋଧ ବାଲ୍ୟକାଳ, ତା'ର ଦୁରନ୍ତ କୈଶୋର, ତା'ର ଶରିଫା ଓ ତା'ର ବାଦଲକୁ କୁଣ୍ଢାଇ ଧରିବା । ହୃଦୟ ମଧ୍ୟରେ ଫୁଟିବା

ପାଇଁ ଥିବା ଏକ କଳିକା ଯାହାକି ଦୀର୍ଘଦିନ ପାଣି-ପବନ ନପାଇ ହୃଦୟ ମଧ୍ୟରେ ହିଁ ମଉଳି ଯାଉଥିଲା, ଆଜି ସେହି ମଉଳା କଳିଟି କାହାର ଯାଦୁସ୍ପର୍ଶରେ ଶହ ଶହ ପାଖୁଡ଼ା ମେଲି ଫୁଟିଉଠୁଛି । କଲ୍ୟାଣୀର ହୃଦୟ ମଧ୍ୟରେ ଗୋଟିଏ ଝରଣା ତରଙ୍ଗାୟିତ ହୋଇ ବହିଯାଉଛି । କି ସୁନ୍ଦର ପ୍ରଶସ୍ତ ପରିଚ୍ଛନ୍ନ ପଥ, ଦୁଇ ପାର୍ଶ୍ୱରେ କୃଷ୍ଣଚୂଡ଼ା ଓ ଦେବଦାରୁ ଗଛର ଧାଡ଼ି ! ଏ ଦେଶ ନୂଆଦେଶ ହେବ କାହିଁକି ? ହରିନାରାୟଣ କହୁଥିଲେ ତାଙ୍କର ଯୌବନାବସ୍ଥାରେ ପାଖରେ ପଇସା ଥିବା ସମୟରେ ଗିଲକରା ପଞ୍ଜାବି ଓ ଫିନ୍ ଫିନ୍ ଧୋତି କିଣିବା ପାଇଁ ସେ କଲିକତା ଚାଲିଯାଉଥିଲେ । କାହାରି କାହାରି ମଧ୍ୟ ଦୈନିକ ବଜାର ସଉଦା କଲିକତାରୁ ନକିଣିଲେ ଚଳୁନଥିଲା । ସନ୍ଦେଶର ଲୋଭରେ ମାଲଦହର ଲୋକମାନେ ନାଟୋର ଚାଲିଆସୁଥିଲେ । ଦେଶ ତ ଗୋଟିଏ ଥିଲା । କଲ୍ୟାଣୀର ଜନ୍ମ ମଧ୍ୟ ଏକ ଅଖଣ୍ଡ ଦେଶରେ । ଭାଗ କର, ସୀମାନ୍ତରେ ପ୍ରହରୀ ସ୍ଥାପନ କର—ଏ ସମସ୍ତ କଲ୍ୟାଣୀର ବାଲ୍ୟାବସ୍ଥାରେ ଘଟିଛି । ବୁଦ୍ଧିହେବା ପରଠାରୁ ସେ ଦେଖିଛି ହରିନାରାୟଣ ବାରଣ୍ଡାରେ ଚେୟାର ପକାଇ ବସି ହୁକାର ଘୁଡୁଘୁଡୁରେ ଟାଣ ଦିଅନ୍ତି ଆଉ ଦୀର୍ଘଶ୍ୱାସ ପକାଇ କହନ୍ତି—'ସରଳା, ବଡ଼ ସର୍ବନାଶ ହୋଇଗଲା, ବଡ଼ ସର୍ବନାଶ । ଭାରତ ବ୍ରିଟିଶଙ୍କୁ ବିତାଡ଼ିତ କଲା ସତ, ହେଲେ ନିଜକୁ ଖଣ୍ଡ ଖଣ୍ଡ କରି ବିତାଡ଼ିତ କଲା ।'

ଦେଶ ବିଭାଜନର ସମସ୍ତ ଯନ୍ତ୍ରଣା କଲ୍ୟାଣୀ ନିଜେ ଭୋଗ କରିଛି । ସେ ବୁଝିପାରେ ହରିନାରାୟଣ କାହିଁକି ଓ କେଉଁ ଉଦ୍ଦେଶ୍ୟରେ ଦୀର୍ଘଶ୍ୱାସ ଛାଡ଼ନ୍ତି । ଏହି ଦେଶରୁ ଉର୍ଦ୍ଦୁଭାଷୀ ମୁସଲମାନମାନଙ୍କୁ ବହିଷ୍କାର କରାଗଲା । ନିଜ ଦେଶରୁ ତେବେ କାହିଁକି ତଳିତଳାନ୍ତ ହୋଇ ହିନ୍ଦୁମାନଙ୍କୁ ଚାଲିଯିବା ପାଇଁ ହୋଇଥିଲା ? ମୁସଲମାନଙ୍କର ହୋମଲ୍ୟାଣ୍ଡ ନହୋଇ ଶେଷପର୍ଯ୍ୟନ୍ତ ଦେଶ ତ ବଙ୍ଗାଳୀମାନଙ୍କର ହୋଇ ରହିଯାଇଛି । ଦେଶଟି ତିରିଶ ଲକ୍ଷ ବଙ୍ଗାଳୀଙ୍କ ରକ୍ତର ଗଠିତ । ଏହି କଥା ଭାବି କଲ୍ୟାଣୀ ଗର୍ବ ଅନୁଭବ କରେ, ଯେଉଁମାନେ ଭାରତରେ ବିଭାଜନ କରିଥିଲେ, ଯେଉଁମାନେ ଏ ଦେଶକୁ ମୁସଲମାନମାନଙ୍କର ହୋମଲ୍ୟାଣ୍ଡରେ ପରିଣତ କରିଥିଲେ, ଯେଉଁମାନଙ୍କର କୂଟବୁଦ୍ଧି ଏହି ଦେଶର ମଣିଷମାନଙ୍କୁ ଦେଶତ୍ୟାଗୀ କରିଛି, ଏକସ୍ତରି ମସିହାରେ ପାକିସ୍ଥାନୀଙ୍କୁ ବହିଷ୍କାର କରିବାର ଯୁଦ୍ଧ ସେହିମାନଙ୍କ ଗାଲରେ ଏକ ଶକ୍ତ ଥାପଡ଼ ମାରିଛି । ପ୍ରମାଣ କରିଛି ଏହି ଦେଶ ମୁସଲମାନମାନଙ୍କର ନୁହେଁ, ବଙ୍ଗାଳୀଙ୍କର । ଏଠାରେ ଧର୍ମ ବଡ଼ ନୁହେଁ, ଭାଷା ବଡ଼ ।

ଦୀପେନ ହାତତାଳି ଦେଇ କହିଲା—ମା, ତୁମର ଦେଶ ବଡ଼ ଚମତ୍କାର ! ଏତେ ସୁନ୍ଦର ଦେଶରେ ଆମେ ସମସ୍ତେ କାହିଁକି ବାସକରୁନାହୁଁ ?

କଲ୍ୟାଣୀର ମଧ୍ୟ ଅନୁରୂପ ପ୍ରଶ୍ନ, ଏତେ ସୁନ୍ଦର ଦେଶରେ ସମସ୍ତେ କାହିଁକି ମିଳିମିଶି ରହୁନା ? ଏହି ଦେଶ ତ୍ୟାଗକରି ତାକୁ କାହିଁକି ଚାଲିଯିବାକୁ ପଡ଼ିଲା ? ସେ କ'ଣ ଏହି ଦେଶରେ ବାସକରି ରହିବା ପାଇଁ ଅନୁପଯୁକ୍ତା ? ଜନ୍ମମାଟି ତ୍ୟାଗକରି ତାକୁ କାହିଁକି ପଳାଇବାକୁ ହେଲା, ସେ କ'ଣ ଖୁଣୀ ଆସାମୀ ? ସେ ଏପରି କି ଅପରାଧ କରିଥିଲା ଯେ ତାକୁ ଏତେ ବଡ଼ ଶାସ୍ତି ଭୋଗ କରିବାକୁ ପଡ଼ିଲା ? କାହିଁ ଶରିଫାକୁ ତ କେଉଁଠାକୁ ପଳାଇଯିବାକୁ ପଡ଼ିନାହିଁ, ସେ ତା'ର ସ୍ମୃତି ଆଉ ସ୍ୱପ୍ନର ଅତି ନିକଟରେ ବାସ କରୁଛି । ତାକୁ ତ ବ୍ରହ୍ମପୁତ୍ରର ଜଳ ଛୁଇଁବା ପାଇଁ ରାତିସାରା କାନ୍ଦିବାକୁ ପଡ଼େ ନାହିଁ । ତାକୁ ତ ଖେଳପଡ଼ିଆ–ମାର୍ବଲ ନିର୍ମିତ ପ୍ରତିମା–କାଠଚମ୍ପାର କୌଣସି ଗଛ ହରାଇବାକୁ ପଡ଼ିନାହିଁ । ତାକୁ ତ ହରାଇବାକୁ ପଡ଼ିନାହିଁ ଏକ ସ୍ୱଚ୍ଛ ଜଳ ପରିପୂର୍ଣ୍ଣ ପୁଷ୍କରିଣୀ, ଯେଉଁ ପୁଷ୍କରିଣୀର ଜଳକୁ ଚାହିଁଲେ ବାଲ୍ୟ-କୈଶୋରର ଅନେକ ସ୍ମୃତି ସମେତ ସମଗ୍ର ମଧ୍ୟାହ୍ନ ପହଁରି କଟାଇବାର ଦୃଶ୍ୟ ମନେପଡ଼ିଯାଏ । ତାକୁ ତ ହରାଇବାକୁ ହୋଇନାହିଁ ସେହି କାମିନୀ ଫୁଲର ଗଛ ଓ ସେହି ଆମ୍ବ, ଜାମୁ, ଗୁଆ, ନଡ଼ିଆ, ପିଜୁଳି ଓ ପଣସର ସୁନ୍ଦର ବଗିଚା । ଆହୁରି ମଧ୍ୟ ତାକୁ ହରାଇବାକୁ ପଡ଼ିନାହିଁ ରେଳଗାଡ଼ିର ପୁଁ-ଝିକ୍-ଝିକ୍ ଶବ୍ଦ । ଆଚାର ଲୁଚାଇ ନେଇ ଗୁମୁଟିଘରେ ବସି ରହିବାର ସ୍ମୃତି ତାକୁ ମଧ୍ୟ ହରାଇବାକୁ ପଡ଼ିନାହିଁ । ସେହି ଗୁମୁଟିଘର, ସେହି ଟ୍ରେନ, ସେହି ପଡ଼ିଆ, ସେହି ପୋଖରୀ, ଗଛ, ବ୍ରହ୍ମପୁତ୍ର ଉପରେ ତା'ର ଅଧିକାର କ'ଣ କିଛି କମ୍ ଥିଲା ? ତେବେ ?

ସ୍କୁଟର ଅଟକାଇ ମାଟି ଉପରକୁ ଓହ୍ଲାଇ ପଡ଼ିବା ପାଇଁ କଲ୍ୟାଣୀର ଇଚ୍ଛା ହୁଏ । ଇଚ୍ଛାହୁଏ ମାଟିକୁ ପୁଳା ପୁଳା ଧରି ଦେହରେ ବୋଳି ହେବାକୁ । ଏହି ମାଟି ପ୍ରତି ଥିବା ଶ୍ରଦ୍ଧା-ସ୍ନେହ-ମମତା ଯୋଗୁଁ ସେ ଅନ୍ୟ କୌଣସି ମାଟିକୁ ନିଜର ବୋଲି ଭାବିପାରିନାହିଁ । ଗୋଟିଏ ମାଟିକୁ ଅନ୍ତର ଦେଇ ଭଲପାଇବା ପରେ କେହି କ'ଣ ଅନ୍ୟ ମାଟିକୁ ଆଦରି ନେଇପାରେ ? ମଣିଷ ତା'ର ଗୋଟିଏ ମନକୁ କେତେଜଣଙ୍କୁ ବା ଦେଇପାରିବ ? ଦେଶର ପବନ ଦେହରେ ଲାଗିବା ପରେ ସେ ଆତ୍ମସନ୍ତୋଷ ଓ ସ୍ୱସ୍ତି ଅନୁଭବ କରେ । ଆନନ୍ଦରେ ବିଭୋର ହୁଏ । ତାହାର ଆନନ୍ଦରେ ଗୁମୁରିଉଠି ଗୁଣୁଗୁଣୁ କରୁଥିବା ଅବସ୍ଥା ସମ୍ପର୍କରେ ଦୀପେନ ଅନୁଭବ କରିପାରେ । ସେ ନିଜର ମା'ଙ୍କ ଦେହକୁ ଆଉଜିଯାଇ କୁହେ–ଚାଲ ବାପାଙ୍କୁ ସର୍‌ପ୍ରାଇଜ କରି ଜଣାଇଦେବା ଯେ ଆମେ ଆଉ ଫେରିବା ନାହିଁ । କଲ୍ୟାଣୀ ସବୁ ଶୁଣି ହସି ହସି କହେ–ଏହା ତାଙ୍କୁ ସର୍‌ପ୍ରାଇଜ କରିବ ନାହିଁ, ବରଂ ଫେରିଗଲେ ସେ ବିସ୍ମିତ ହେବେ ।

ଦୀପେନ ହସେ । ତା'ର ବା ବୟସ କେତେ ହେବ ? ଏ ସମସ୍ତ ସତ୍ତ୍ୱେ ସେ ବୁଝିପାରେ ଏ ଦେଶ କୌଣସି ନୂଆ ଦେଶ ନୁହେଁ । ଅଥଚ ଅନିର୍ବାଣର ଏପରି ବୋଧଶକ୍ତି ଥିବାର ଅନୁମିତ ହୁଏ ନାହିଁ । ଏହି କାରଣ ଯୋଗୁଁ କଲ୍ୟାଣୀର ତା' ପ୍ରତି ଏକପ୍ରକାର ଦୟା ହୁଏ । ଏଇ ମଣିଷଟିର ଦେହ କ'ଣ ପାଷାଣରେ ଗଢ଼ା ? ଏହା ମଧ୍ୟ ହୋଇପାରେ । କଲିକତାର ମଣିଷମାନେ ତାକୁ ପାଷାଣ ପରି ମନେହୁଅନ୍ତି । ମାୟାମମତା ନାହିଁ, କିଛି ନାହିଁ । ଯେ ଯାହାର ସ୍ୱାର୍ଥ ନେଇ ସର୍ବଦା ବ୍ୟସ୍ତ ରହିଥାନ୍ତି । ଏହା ଦେଖି ଦେଖି କଲ୍ୟାଣୀର ମନରେ ଘୃଣାଭାବ ଜନ୍ମିଛି । ପ୍ରକୃତରେ ସେ ପୁନର୍ବାର ସେହି ସ୍ୱାର୍ଥପର ମଣିଷଙ୍କ ଭିଡ଼ ମଧ୍ୟକୁ ଫେରିଯିବା ପାଇଁ ଇଚ୍ଛା କରେନାହିଁ । ଦିନକର ଘଟଣା, ପାଖଘରର ଭାଉଜ ସମୟ ଅସମୟରେ ସ୍ୱତଃ ତା' ନିକଟକୁ ଆସି ଯିଏ ଭଲ ପାଇବାର ଅଭିନୟ କରୁଥିଲେ, ପାଖରେ ଖୁଚୁରା ନଥିବା ଦୃଷ୍ଟିରୁ ଟ୍ୟାକ୍‌ସି ଭଡ଼ା ଦେବା ପାଇଁ ତାଙ୍କୁ ଧାର ସୂତ୍ରରେ ପାଞ୍ଚଟଙ୍କା ମାଗିଥିଲା । ଏହା ଶୁଣି ସେ ଏପରି ଭାବ ପ୍ରଦର୍ଶନ କଲେ ଯେ, ଯେପରିକି ସେ କଲ୍ୟାଣୀକୁ ଚିହ୍ନନ୍ତି ନାହିଁ, ସତେ ଯେପରି କେଉଁଠିକାର ଭିକାରିଣୀଟିଏ ଅନୁଗ୍ରହ ଆଶାକରି ତାଙ୍କ ନିକଟକୁ ଆସିଛି । କହିଲେ—ଟଙ୍କା ? ଟଙ୍କା ତ ନାହିଁ ।

ବସ୍‌ଷ୍ଟାଣ୍ଡରେ ଢାକାଠାରୁ ମୟମନସିଂହ ଲେଖା ହୋଇଥିବା ବସ୍ ଛିଡ଼ା ହୋଇଥିଲା । ଗୋଟିଏ ବସ୍‌ରେ କଲ୍ୟାଣୀ ଉଠିଲା । ପନ୍ଦର ଷୋହଳଜଣ ଭଳି ଯାତ୍ରୀ ବସିଥିଲେ । ସେମାନେ ନିଜ ନିଜ ମଧ୍ୟରେ ଯେଉଁ ଭାଷାରେ କଥାବାର୍ତ୍ତା ହେଉଥିଲେ କଲ୍ୟାଣୀ ଜାଣେ ତାହା ମୟମନସିଂହର ଭାଷା । ସେ ଯେଉଁ ସ୍କୁଲରେ ଚାକିରି କରିଛି ସେହି ସ୍କୁଲର ହେଡ଼କ୍ଲର୍କଙ୍କ ଘର ମୟମନସିଂହରେ ଥିଲା ଜାଣିବା ପରେ ସେ ଅବସର ପାଇଲେ ତାଙ୍କ ଅଫିସ ଘରକୁ ଯାଏ, କୁହେ—'ଆପଣଙ୍କ ପାଖକୁ ଆସିଲେ, ଦେଶର ମହକ ପାଏ, ଚାଲନ୍ତୁ ଦୁହେଁ ଆମ ଦେଶର ଭାଷାରେ ଆଳାପ ଆଲୋଚନା କରିବା ।' ହେଡ଼କ୍ଲର୍କ ସମ୍ଭବତଃ ବୁଝିପାରେ ନାହିଁ ଉପୁଡ଼ି ପଡ଼ିଥିବା ଗଛରେ ଆଉ କ'ଣ ଥାଏ ଯେ, ବାରମ୍ବାର ପଛକୁ ଚାହିଁ ଫେରି ଦେଖିବାକୁ ହେବ ! ଲୋକଟି ଥରେ ଟଙ୍କାପଇସା ହେରଫେର କରିଥିବା ଅଭିଯୋଗରେ ଅଭିଯୁକ୍ତ ହୋଇଥିଲା, କଲ୍ୟାଣୀ ନିଜର ସମସ୍ତ କିଛି କାମ ପଛକୁ ଠେଲିଦେଇ ତାକୁ ସେଥିରୁ ମୁକ୍ତ କରିବା ପାଇଁ ଲାଗିପଡ଼ିଥିଲା । ବୋର୍ଡ଼ ବସିଲା, କଲ୍ୟାଣୀ ହେଡ଼କ୍ଲର୍କଙ୍କ ପକ୍ଷ ସମର୍ଥନ କରି ସେହି ବୋର୍ଡ଼ରେ ଖୁବ୍ ଜୋର୍‌ଦେଇ ଚ୍ୟାଲେଞ୍ଜ କରିଥିଲା । ଅନିର୍ବାଣକୁ ଜଣାଇବାରୁ ସେ କହିଥିଲା—'ଅଯଥାରେ ତୁମେ ଏହି ଝମେଲାରେ ଜଡ଼ିତ ହେଲ, ଲୋକଟି ବାସ୍ତବରେ ଟଙ୍କାପଇସା ହେରଫେର କରିଛି,

ଆଉ ତୁମେ କ'ଣ କଲନା ଜଣେ ନିଛକ ଅସାଧୁ ଲୋକକୁ ସମର୍ଥନ ଜଣାଇ ବସିଲ ।'
କଲ୍ୟାଣୀ କହିଥିଲା–'ଅସାଧୁ ହେବ କାହିଁକି, ମୟମନସିଂହର ଲୋକ... ।'

ଯାତ୍ରୀମାନଙ୍କ ମଧ୍ୟରେ କଥିତ ଶବ୍ଦଗୁଡ଼ିକର ମଧୁର ସ୍ୱର ତାକୁ ସତେ ଯେପରି ନେଇଯାଉଥିଲା ମେଛୁଆବଜାର ଗଳିକୁ, ବିଦ୍ୟାମୟୀ ପଡ଼ିଆକୁ, ପୁରୋହିତପଡ଼ା ପୋଖରୀଘାଟକୁ । କଲ୍ୟାଣୀ ମନେ ମନେ ଦୌଡ଼ିବା ଆରମ୍ଭ କରିଦିଏ କାଚିଝୁଲିଠାରୁ କେଓୟଟଖାଲି, ଷ୍ଟେସନ ରୋଡ଼ରୁ ପୋଲିସ୍ ଲାଇନ୍, ଆକୁୟାର ତିନକୋଣା ପୋଖରୀଠାରୁ ସ୍ୱଦେଶୀ ବଜାର । ପଛରେ ତା'ର ଫ୍ରକ୍ ଉଡୁଥାଏ, ଉଡୁଥାଏ ଫିତାବନ୍ଧା ଦୁଇଟି ବେଣୀ ।

ବସ୍‌ର ଲୋକମାନେ ତା'ର ନିଜ ଦେଶର ଲୋକ । ତା'ରି ସହରରେ ସେମାନେ ବାସକରନ୍ତି । ଏମାନଙ୍କ ପ୍ରତି ଆତ୍ମୀୟତା ଥିବାର କଲ୍ୟାଣୀ ଅନୁଭବ କରେ, ଜଣେ ଦୁଇଜଣଙ୍କୁ ପଚାରିବସେ–ଆପଣ ହରିନାରାୟଣ ରାୟଙ୍କୁ ଚିହ୍ନିଛନ୍ତି ? କାଳିବାଡ଼ିର ହରିନାରାୟଣ, ସେହି ଯେଉଁ ବଡ଼ ଏକ ପଡ଼ିଆ, ଗଛଲତାଘେରା ଦୋତାଲା କୋଠା, ଦୋତାଲାକୁ ଉଠିବା ପାଇଁ ଏକ ଲୁହାର ଶିଡ଼ି । ବର୍ତ୍ତମାନ ସେହି ଘରଟିରେ କିଏ ରହୁଛନ୍ତି ?

ଜାଣି ନଥିବାର ସୂଚନା ଦେଇ ସେମାନେ ମୁଣ୍ଡ ହଲାଇଥାନ୍ତି ।

କଲ୍ୟାଣୀ କିଛି କଦଳୀ ଓ ବିସ୍କୁଟ କିଣି ଦୀପେନକୁ ଦିଏ । ସେ ଖୁବ୍ ମନୋଯୋଗ ସହକାରେ ଯାତ୍ରୀମାନଙ୍କ କଥା ଶୁଣେ । ଆଉ ଫିସ୍‌ଫିସ୍ କରି କଲ୍ୟାଣୀ କାନ ପାଖରେ ମୁହଁ ଦେଇ ପଚାରେ–ଏମାନେ ଏପରି କଥା ହେଉଛନ୍ତି କାହିଁକି ?

–ଏହା ହେଉଛି ମୟମନସିଂହର ଭାଷା । ଆମ୍ଭମାନଙ୍କର ଅରିଜିନାଲ ଭାଷା ।

–ବୁଝିଛି, ଏହା ହେଉଛି ବାଙ୍ଗାଲ ଭାଷା ।

–ତୋତେ କିଏ କହିଲା ?

–ତୀର୍ଥ ନାମରେ ମୋର ଜଣେ ସାଥୀ ଅଛି । ତା' ଜେଜେମା ଏହିପରି କଥା କୁହନ୍ତି । ତୀର୍ଥ ଆଉ ତା'ର ଭଉଣୀ ନମ୍ରତା କହନ୍ତି କ'ଣ ଯେ ବାଙ୍ଗାଲ ଭାଷାରେ ଜେଜେମା କଥା କୁହନ୍ତି ଆମେ କିଛି ହେଲେ ବୁଝିପାରୁନା ।

–ବାଙ୍ଗାଲ ପୁଣି କ'ଣ ? ଏହା ହେଉଛି ବଙ୍ଗଳାଭାଷା । କିଛିଟା ଆଞ୍ଚଳିକତା ତ ଅବଶ୍ୟ ହିଁ ରହିବ । କଲିକତା ସହିତ ଚବିଶପ୍ରଗଣାର, ଚବିଶପ୍ରଗଣା ସହ ମୁର୍ଶିଦାବାଦର ଖୁବ୍ ସାମାନ୍ୟ ହେଲେ ମଧ୍ୟ ଭାଷାଗତ ପାର୍ଥକ୍ୟ ରହିଛି । ଏଇ ଯେପରି ଇଂଲିଶ ଲାଙ୍ଗୁଏଜ,

ଯେଉଁମାନେ ଇଂରାଜୀ କୁହନ୍ତି ସମସ୍ତେ କ'ଣ ଏକପ୍ରକାର କୁହନ୍ତି ? ସାମାନ୍ୟ ଏପଟସେପଟ ନାହିଁ ? ଆମେରିକାନ ଓ ବ୍ରିଟିଶ ଇଂରାଜୀ ମଧ୍ୟରେ ତ ଖୁବ୍ ପାର୍ଥକ୍ୟ ରହିଛି, ତେବେ କ'ଣ ଏହାକୁ ଇଂଲିଶ କୁହାନଯାଇ ଆଂଲାଶ କୁହାଯିବ ।

ଆଂଲାଶ ଶବ୍ଦ ଶୁଣି ଦୀପେନ ହସିଉଠେ । କଦଳୀର ଚୋପା ଝରକା ବାହାରକୁ ପକାଇ ଦେଉ ଦେଉ ସେ କହେ—ଆଂଲାଶ ।

ଏହି ଭାଷା ତୋର ନବୁଝିବାରେ ବା କ'ଣ ଅଛି ? ଘରେ ତ ମଝିରେ ମଝିରେ ମୁଁ ଏହି ଭାଷା କୁହେ । ତୁ କ'ଣ କିଛି ବୁଝିପାରୁନାହୁଁ ଦୀପେନ ? କଲ୍ୟାଣୀ ନମ୍ରସ୍ୱରରେ ଜାଣିବାକୁ ଚାହେଁ ।

—କିଛି କିଛି ବୁଝିପାରୁଛି । ସମ୍ପୂର୍ଣ୍ଣ ନୁହେଁ ।

କଲ୍ୟାଣୀ ସାମାନ୍ୟ ଆହତ ହୁଏ । ପୁଅ ଯଦି ତା ମା'ଦେଶର ଭାଷା ବୁଝିନପାରେ ତେବେ ଦୁର୍ଭାଗ୍ୟ କାହାର ? ପୁଅର ନା ଭାଷାର ? କଲ୍ୟାଣୀ କପାଳରେ ସିନ୍ଦୂର ଟୋପା, ସିଛିରେ ସିନ୍ଦୂର, ହାତରେ ଶଙ୍ଖା, ଖଣ୍ଡିଏ ନୀଳରଙ୍ଗର ସୂତାଶାଢ଼ି ପିନ୍ଧିଛି । ବସ୍‌ର ଅନେକ ଲୋକ ତାକୁ ମୁହଁ ବୁଲାଇ ଚାହିଁ ଦେଖୁଛନ୍ତି । ଜଣେ ମଧ୍ୟବୟସ୍କ ଭଦ୍ରବ୍ୟକ୍ତି ସମ୍ମୁଖ ସିଟ୍‌ରୁ ପଛକୁ ଚାହିଁ ପ୍ରଶ୍ନକଲେ—କେଉଁଠାକୁ ଯିବ ?

କଲ୍ୟାଣୀ ହସି ହସି କହିଲା—ମୟମନସିଂହ ।

ଢାକାରେ ରୁହନ୍ତି ନା କ'ଣ ?

—ନା, କଲିକତାରେ । ମୋର ବାପଘର ମୟମନସିଂହର କାଳିବାଡ଼ି । ହରିନାରାୟଣ ରାୟଙ୍କ ଘର ଚିହ୍ନିଛନ୍ତି, ବ୍ରହ୍ମପୁତ୍ର କୂଳରେ ?

ଲୋକଟି ନାସ୍ତିସୂଚକ ମୁଣ୍ଡ ହଲାଇଲେ । ସେ ଚିହ୍ନନ୍ତି ନାହିଁ ।

ଏକ ସମୟରେ ସହରର ସମସ୍ତ ହରିନାରାୟଣଙ୍କୁ ଗୋଟିଏ ନାମରେ ଚିହ୍ନୁଥିଲେ । ଆଜି ଏତେଗୁଡ଼ାଏ ଲୋକଙ୍କ ମଧ୍ୟରେ ଜଣେ କେହି ବି ଚିହ୍ନନ୍ତି ନାହିଁ, ଏହା ବଡ଼ ଆଶ୍ଚର୍ଯ୍ୟର କଥା । କଲ୍ୟାଣୀର ମନରେ ଦୁଃଖ ଆସେ । ପରେ ମନକୁ ସାନ୍ତ୍ୱନା ଦିଏ, ବୋଧହୁଏ ଏମାନେ ଖାସ୍ ମୟମନସିଂହର ଲୋକ ନୁହନ୍ତି । ଅଳ୍ପ ଦୂରର ଲୋକ ହୋଇଥିବେ ।

—ଆପଣଙ୍କର ନାମ କ'ଣ ଭାଇ ? ସମ୍ମୁଖ ସିଟ୍ ଆଡ଼କୁ ନଇଁପଡ଼ି କଲ୍ୟାଣୀ ପଚାରେ ।

—ଲୋକଟି ଶାନ୍ତ ଗଳାରେ ଜବାବ ଦେଲେ 'ଅବଦୁଲ ଜବାର' । କଲ୍ୟାଣୀ ତାଙ୍କ ସହିତ ସ୍ୱଚ୍ଛନ୍ଦ ଭାବେ କଥାବାର୍ତ୍ତା କରିବାପାଇଁ ଆଗ୍ରହାନ୍ୱିତ ହୋଇଉଠେ । ଲୋକଟି ମୁହଁ ବୁଲାଇ ନେବାରୁ ତାକୁ ନିରବ ରହିବାକୁ ପଡ଼େ । ଏହି ସମୟରେ କଲ୍ୟାଣୀର ପଛସିଟ୍‌ରୁ ଜଣେ ଯୁବକ ପ୍ରଶ୍ନକଲା—କେଉଁ ହରିନାରାୟଣ ? ଯାହାଙ୍କ ଲୁଗା ବ୍ୟବସାୟ ଅଛି ?

—'ନା ନା, ମୋ ବାପା ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଥିଲେ ।' କଲ୍ୟାଣୀ ପଛକୁ ଚାହିଁ ଉତ୍ତର ଦେଲା ।

—ଓ ! ଷ୍ଟେସନରୋଡ଼ର ଗୌରହରି ବସ୍ତ୍ରାଳୟର ମାଲିକଙ୍କ ନାମ ମଧ୍ୟ ହରିନାରାୟଣ ।

—ହରିନାରାୟଣ କ'ଣ ? ରାୟ ?

—ତାହା ଜାଣିନାହିଁ ।

—ମୋ ବାପାଙ୍କୁ ସହରରେ ସମସ୍ତେ ଚିହ୍ନନ୍ତି ।

—ସେ କ'ଣ ଜଜକୋର୍ଟରେ ଅଛନ୍ତି ?

—ବାପା ତ ନାହାନ୍ତି, ଆଜିକି କେତେବର୍ଷ ହେଲା ବାପା ନାହାନ୍ତି, ନିଜ ଆଙ୍ଗୁଳିର ରେଖା ଗଣି ଗଣି କଲ୍ୟାଣୀ କହିଲା, 'ଆଜିକି ସତେଇଶ ବର୍ଷ ହେବ ।'

—ସତେଇଶ ବର୍ଷ ପୂର୍ବେ ସେ ମୃତ୍ୟୁବରଣ କରିଛନ୍ତି ? କ'ଣ କହୁଛନ୍ତି ?

—ହଁ, ସତେଇଶ ବର୍ଷ ପୂର୍ବେ ।

କଲ୍ୟାଣୀ ଦୀର୍ଘଶ୍ୱାସ ତ୍ୟାଗ କରେ । ଯେପରି ମୁହୂର୍ତ୍ତଟିଏ ପରି ଆଖିଆଗରେ ସତେଇଶ ବର୍ଷ ଅତିବାହିତ ହୋଇଯାଇଛି । ହରିନାରାୟଣଙ୍କ କୋଳରେ ବସି ଚକୋଲେଟ ଖାଇବା କାଲିର ଘଟଣା ପରି ତାକୁ ମନେହୁଏ । ସରଳାବାଳା କହୁଥିଲେ— 'ଏତେ ଆଦର କରି ତାକୁ ମୁଣ୍ଡରେ ବସାଅ ନାହିଁ ।'

ହରିନାରାୟଣ ହସି ହସି କହୁଥିଲେ—'କ୍ଷତି କ'ଣ, ଝିଅକୁ ତ ମୁଁ ମୁଣ୍ଡରେ ବସାଇବାକୁ ଚାହେଁ ।'

କାହିଁ କେଉଁଠି ତାକୁ ଆଉ ମୁଣ୍ଡରେ ବସାଇଲେ ! ତିଳଜଳାର ପାଣିକୁ ଠେଲିଦେଇ ସେମାନେ ଭାବିଲେ ଝିଅ ବୋଧହୁଏ ପହଁରି ଜାଣେ । ଝିଅ ପୋଖରୀ ପାଣିରେ ପହଁରି

ଜାଣେ ବୋଲି ଯେ ଜୀବନର କର୍ଦ୍ଦମପୂର୍ଣ୍ଣ ପାଣିରେ ହାତଗୋଡ଼ ହଲାଇ ପହଁରି ପାରିବ—ଏକଥା ସେମାନେ ଭାବିଲେ ବା କିପରି ? ହାତଗୋଡ଼ ବାନ୍ଧିଦେଇ ଚୋରାବାଲିକୁ ଠେଲିଦେଲେ ଯେପରି ଅବସ୍ଥା ହୁଏ କଲ୍ୟାଣୀର ଅବସ୍ଥା ସେହିପରି ହୋଇଥିଲା ।

ବସ୍ ଚାଲିବାକୁ ଆରମ୍ଭ କରେ । କଲ୍ୟାଣୀ ଝରକା ପାଖରେ ବସିରହି ଯାହା ଆଖି ଆଗକୁ ଆସେ ନିରୀକ୍ଷଣ କରିବାରେ ଲାଗେ । ଟଙ୍ଗୀ, ଜୟଦେବପୁର, ରାଜେନ୍ଦ୍ରପୁର ପାର ହୋଇ ବସ୍‌ଟି ଘଞ୍ଚ ଶାଳବଣର ଛାଇଆଲୁଅ ପଥ ଅତିକ୍ରମ କରିବାରେ ଲାଗେ । ଦୀପେନ ଏ ସମସ୍ତ ଦେଖେ ଓ କୁହେ—ଦିଦି ଆସିଥିଲେ ଖୁବ୍ ଭଲ ହୋଇଥାନ୍ତା, ନା ମା' ? କଲ୍ୟାଣୀ ମୁଣ୍ଡହଲାଏ । ଭଲ ତ ହୋଇଥାନ୍ତା, ମା'ଙ୍କ ଦେଶ ଦେଖିଥାନ୍ତା, ନିଜ ମା'ଙ୍କ ଦେଶ—ଏହାଠାରୁ ବଡ଼ ଆନନ୍ଦ ଆଉ କ'ଣ ଅଛି ! କଲ୍ୟାଣୀ ଅନୁଭବ କରେ ବର୍ତ୍ତମାନ ସତେ ଯେପରି ସେ ଦୀପେନ ଜୟିଷାଙ୍କ ମା' ନୁହଁ, ଅନିର୍ବାଣର ସ୍ତ୍ରୀ ନୁହଁ, କେବଳ କଲ୍ୟାଣୀ ରାୟ, ହରିନାରାୟଣ ରାୟଙ୍କ କନ୍ୟା । ସେ ଯେ ଦୀର୍ଘ ବାଇଶ ବର୍ଷ ଧରି ସଂସାରର ସାମାଜିକ କ୍ଷେତ୍ରରେ କଲ୍ୟାଣୀ ଦାଶ ଭାବରେ ପରିଚିତ ଏହା ସେ ଶ୍ରୀପୁର, ଭାଲୁକା, କାଜିର ଶିମଳା, ଭରାଡୋବାର ସ୍ନିଗ୍ଧ ଶୀତଳ ପବନରେ ପ୍ରାୟ ଭୁଲିଯାଏ ।

ପିଲାବେଳେ କଲ୍ୟାଣୀ ମଝିରେ ମଝିରେ ହରିନାରାୟଣଙ୍କ ସହିତ ଢାକା ସହରକୁ ଯାଉଥିଲା । ମୟମନସିଂହ ଜଙ୍କସନଠାରୁ ଗାଡ଼ି ଛାଡ଼ି ଦେବାପରେ ସୂତିୟାଖାଲି, ଗଫରଗାଁଓ, କାଓରାଇଦ, ଭାଓୟାଲ, ଜୟଦେବପୁର, ଧୀରାଶ୍ରମଠାରୁ ଅତି ଧୀରେ ଧୀରେ ଯାଇ ଟ୍ରେନ୍ ଫୁଲିବାଡ଼ିୟା ଷ୍ଟେସନରେ ରହିଯାଏ । କଲ୍ୟାଣୀ ତା' ପିତାଙ୍କ ସହିତ ଗୋପୀବାଗରେ ରହୁଥିବା ଦୁଲେନ୍ଦ୍ରଙ୍କ ଘରକୁ ଯାଏ । ଦୁଲେନ୍ଦ୍ର ହରିନାରାୟଣଙ୍କ ପିଉସୀପୁଅ ଭାଇଙ୍କ ପୁଅ । ସେହି ଘରର ପିଲାମାନେ କଲ୍ୟାଣୀକୁ ଦେଖି ଏକ ଅଦ୍ଭୁତ ଭାଷାରେ କଥା କହୁଥିଲେ । ସେଇଟି ହେଲା ଚିଚଚିଲଚିଓଚିକେଚିଭଚିୟଚିଦେଚିଖାଚିଇ—ଏତକ କହିବା ପରେ ସେମାନେ ଖିଲିଖିଲି ହୋଇ ହସି ଉଠୁଥିଲେ । ଯଦିଓ କଲ୍ୟାଣୀ ଏହା ବୁଝେ ନାହିଁ, ତଥାପି ଅପମାନରେ ଲାଲ୍ ପଡ଼ିଯାଏ । ତାକୁ କେନ୍ଦ୍ରକରି ଯେ ସେମାନେ ଏହା କହୁଛନ୍ତି ଏବଂ କଥାଗୁଡ଼ିକ ଯେ ଆଦୌ ତା' ସପକ୍ଷରେ ନୁହେଁ, ଏକଥା ସେ ବୁଝିପାରୁଥିଲା । ଏହାର ଅର୍ଥ କ'ଣ ବୁଝିବା ପାଇଁ ସେ ବ୍ୟସ୍ତ ହୋଇପଡୁଥିଲା । କେହି ତାକୁ ଶିଖାଉ ନଥିଲେ, ଗୋପନରେ ବିଭିନ୍ନ ଲୋକଙ୍କ ସାହାଯ୍ୟ ନେଇ ମଧ୍ୟ ଯେତେବେଳେ କୌଣସି କାର୍ଯ୍ୟରେ ଲାଗିଲା ନାହିଁ—ଘରର ସମସ୍ତେ ଶୋଇବା ପରେ ମଶାରି ତଳେ

ଅସ୍ୱଷ୍ଟ ଆଲୁଅରେ କାଗଜ ଉପରେ କଲମ ଦ୍ୱାରା ସେହି ଅଦ୍ଭୁତ ଶବ୍ଦକୁ ଲେଖି ପରୀକ୍ଷା କରେ, ତହିଁରେ ଏପରି କ'ଣ ରହିଛି । ଦିନେ ଏହାର ରହସ୍ୟ ଖୋଲିଗଲା । ସେମାନେ କଲ୍ୟାଣୀ ଆଗରେ କହିଲେ–ଚିଓଚିରଚିଜୁଚିତାଚିପୁଚିକୁଚିରେଚିଫେଚିଲେଚିଦାଚିଓ । ଏହାପରେ ସେ ଦେଖିଲା ତା'ର ଜୋତା ହଳକ ଧରି ଜଣେ ଜୋର୍‌ରେ ଦୌଡ଼ି ପଳାଇଲା । ଜୋତା ନେଇଯାଉଥିବା ପିଲାଟି ପଛରେ ଦୌଡ଼ି ନଯାଇ ସେ ସେହି ଦୀର୍ଘ ଶବ୍ଦଟି ମୁଖସ୍ଥ କରି ଖାତାରେ ଲେଖି ରଖିଲା, ପରେ ଏହି ଶବ୍ଦ ମଧ୍ୟରେ ଜୋତା ଶବ୍ଦଟିକୁ ଉଦ୍ଧାର କରି ସମ୍ପୂର୍ଣ୍ଣ ଶବ୍ଦଟିର ରହସ୍ୟ ଉଦ୍‌ଘାଟନ କରି ପାରିଲା । ଏହା କରିବା ପାଇଁ ସେ ସମର୍ଥ ହେଲା ରାତ୍ରର ଗଭୀରତା ମଧ୍ୟରେ । ସେ ଦୀର୍ଘଦିନଧରି ଯାହାର ଅନୁସନ୍ଧାନ କରୁଥିଲା ତାହାକୁ ପାଇଥିବାରୁ ଆନନ୍ଦରେ ସେ ଏପରି ବିଭୋର ହୋଇପଡ଼ିଲା ଯେ, କଲ୍ୟାଣୀ ସେମାନଙ୍କୁ ନିଦରୁ ଉଠାଇ କହିଥିଲା–ଚିତୋଚିମଚିରାଚିଖୁଚିବଚିଖାଚିରାଚିପ । ଏହା ପରଠାରୁ ସେ ସେମାନଙ୍କ କଥାକୁ ବିଶେଷ ଗୁରୁତ୍ୱ ଦେଲା ନାହିଁ । ଏପରି ଭାବ ଦେଖାଏ ଯେପରି ମୋ ପଛରେ ଲାଗିପାରିବ ନାହିଁ, ଏଣୁ ଅଯଥାରେ ଲାଗନାହିଁ ।

ଅବଦୁଲ୍ ଜବାର ଆଉ ପଛକୁ ଫେରି ଚାହୁଁ ନାହିଁ । କଲ୍ୟାଣୀ ଲୋକଟି ପ୍ରତି ଖୁବ୍ ଆଗ୍ରହ ପ୍ରକାଶ କରେ । କାରଣ ତାଙ୍କ ଘର ମୟମନସିଂହରେ, କଲ୍ୟାଣୀର ମଧ୍ୟ । ତିରିଶ ବର୍ଷ ପରେ କଲିକତାରୁ ସେ ଦେଶକୁ ଫେରୁଛି । ଫେରିବା ପାଇଁ କାହିଁକି ତିରିଶ ବର୍ଷ ଲାଗିଗଲା, କଲ୍ୟାଣୀ ଇଚ୍ଛା କରିଥିଲେ ସମସ୍ତ ଜଞ୍ଜାଳ ଓ ବନ୍ଧନ ତୁଟାଇ କ'ଣ ଆସିପାରିନଥାନ୍ତା ? ଇଚ୍ଛା କରିଥିଲେ ଯଥେଷ୍ଟ ପୂର୍ବରୁ ସେ ଆସିପାରିଥାନ୍ତା । ଅନିର୍ବାଣର ଅନୁମତି ପାଇଁ କାହିଁକି ବା ତାକୁ ଅପେକ୍ଷା କରିବାକୁ ପଡ଼ିଲା ? ଜନ୍ମମାଟି, ନଦୀ, ପଡ଼ିଆ, ଫସଲଭରା କ୍ଷେତ, ସବୁଜ ଶ୍ୟାମଳ ବୃକ୍ଷ ଏବଂ ଘର ପଛପଟରେ ଥିବା ବୁଦା ବୁଦା ଜଙ୍ଗଲ ମଧ୍ୟରେ ଖୁବ୍ ଅଯତ୍ନରେ ବଢ଼ିଉଠିଥିବା କଳାବତୀ ଫୁଲ ନିକଟକୁ କାହିଁକି ସେ ଏତେବର୍ଷ ପର୍ଯ୍ୟନ୍ତ ଆସିଲା ନାହିଁ । ନିଷ୍ଠୁର ନହେଲେ କେହି କ'ଣ କେବେ ଭୁଲିଯାଇପାରେ ସେଇ ପ୍ରଚଣ୍ଡ ଗୁଳୁଗୁଳିରେ ବାରଣ୍ଡାରେ ଗୋଡ଼ ମେଲାଇବସି ପାଇଜାମାରେ ଦୂବ ତୋଳିବାର ସ୍ମୃତି । ଯେଉଁ ଦିନଗୁଡ଼ିକ ଚାଲିଯାଇଛି ତାହା କ'ଣ ସତରେ ସବୁଦିନ ପାଇଁ ଚାଲିଯାଇଛି ! କଲ୍ୟାଣୀ ଆଶାକରେ କେହି ଛୁମନ୍ତର କରି ଫୁଙ୍କିଦେଇ ତା' ହାତରେ ଧରାଇଦେଇ ପାରନ୍ତା କି ସେହି ବିଗତ ଶୈଶବ ଓ କୈଶୋରକୁ–ସେ ଫେରିପାଆନ୍ତା କି ସେଇ ବଂଶୀ ବଜାଇବାର ଦିନଗୁଡ଼ିକ, ଭାଟିୟାଲିର ଦିନଗୁଡ଼ିକ, ବାଉଲର ଦିନଗୁଡ଼ିକ, କୂଳ ଲଙ୍ଘନକରି ନଦୀର ବାଙ୍କେ ବାଙ୍କେ, ତାଳ ନଡ଼ିଆର ଫାଙ୍କେ ଫାଙ୍କେ...

ରାସ୍ତାର ଉଭୟ ପାର୍ଶ୍ୱରେ ଶାଳ ଶାଗୁଆନର ବଣ ପାରହୁଏ । ଭାଓୟାଲର ଗଡ଼ ପାରହୁଏ, ଦୀର୍ଘ ଅନାବାଦୀ ନାଲିଆ ମାଟିର ଭୂଇଁ ଭାଓୟାଲ ପାର ହେଲେ ମାଇଲ୍ ମାଇଲ୍ ଧରି ପଣସ ଗଛର ଜଙ୍ଗଲ । ଗୋଟିଏ ଗୋଟିଏ ଗଛରେ ଦଶ ବାରଟି ପଣସ ଝୁଲି ରହିଛି, ଆମ୍ବ ଗଛରେ ମଧ୍ୟ ଆମ୍ବ ଝୁଲୁଛି । କଲିକତାର ରାସ୍ତାକଡ଼ ଗଛରେ ଆମ୍ବ ପଣସ ଝୁଲି ରହିବାର କଳ୍ପନା ମଧ୍ୟ କରାଯାଇନପାରେ । କଞ୍ଚା ପଣସରେ ସରଳାବାଳା ଖୁବ୍ ସୁସ୍ୱାଦୁ ତରକାରି ରାନ୍ଧି ପାରନ୍ତି । ଏ ପର୍ଯ୍ୟନ୍ତ ସେହି ତରକାରିର ସ୍ୱାଦ ତା' ଜିଭରେ ଲାଗି ରହିଛି । ଚତୁର୍ଦ୍ଦିଗରେ ଘନ ସବୁଜିମା ଭରି ରହିଛି । ବସ୍ କିଛି ସମୟ ପାଇଁ ତ୍ରିଶାଲ ବଜାରରେ ଛିଡ଼ା ହେଲା । ଦୀପେନ ଝରକାରେ ମୁଣ୍ଡଗଳାଇ ଧାନଚାଉଳ, ପନିପରିବା, ଆଳୁ-ପୋଟଳ ଆଉ ବିଭିନ୍ନ ପ୍ରକାର ମାଛର ହାଟ ଦେଖେ । କଲ୍ୟାଣୀ କହିଲା—ଏମାନେ ଗରିବ ହେଲେ ମଧ୍ୟ ଖୁବ୍ ଭଲ ମଣିଷ । ଯଦି କାହା ଘରେ ପହଞ୍ଚିବ, ସେମାନେ ତୁମକୁ ବସିବାକୁ ଦେବେ, ଖାଇବାକୁ ଦେବେ, କିଛିଦିନ ରହିଯିବା ପାଇଁ ଅନୁରୋଧ କରିବେ ।

—ସତ ନା କ'ଣ ? ଦୀପେନ ଆଶ୍ଚର୍ଯ୍ୟ ହୋଇ ପଚାରେ ।

—ହଁ, ସତ ।

—ଏମାନେ କାହିଁକି ଆମକୁ ଖାଇବାକୁ ଦେବେ, ରହିବାକୁ ଦେବେ ?

—ଏମାନେ ଖୁବ୍ ସରଳ ମଣିଷ ତ, ସେଇଥିପାଇଁ ।

—ବୋକା ବି ବୋଧେ ?

—ତୁ କ'ଣ ଅନେଷ୍ଟ୍‌କୁ ଫୁଲ୍ କହୁ ?

ଓଃ ନୋ ଡିୟର୍ । ଦୀପେନ କଲ୍ୟାଣୀ କୋଳରେ ମୁହଁରଖି ହସିହସି କହିଲା ।

ଦରିରାମପୁର ଆସିବାରୁ କଲ୍ୟାଣୀ ଝରକା ଆଡ଼େ ଆଙ୍ଗୁଳି ବଢ଼ାଇ ଦେଖାଇ ଦିଏ—ଦେଖ ଦୀପେନ, କାଜୀ ନଜରୁଲ ଇସ୍‌ଲାମ ଏଠାରେ ଥିଲେ । ଏଠିକାର ଗୋଟିଏ ସ୍କୁଲରେ ପଢୁଥିଲେ ।

କିଣ୍ଡାରଗାର୍ଟେନର ପଢୁଥିବା ପିଲା କାଜୀଙ୍କୁ ଚିହ୍ନିବାରେ ବିଳମ୍ବ ହେବାର ଦେଖି କଲ୍ୟାଣୀ ଧୈର୍ଯ୍ୟଧରି ପାରିଲା ନାହିଁ । ସେ କହିଥିଲା, 'ପଢ଼ିନାହୁଁ ବାବୁଦେର ତାଲପୁକୁରେ ହାବୁଦେର ଡାଲକୁକୁରେ...' ଦୀପେନ ହସି ହସି ମୁଣ୍ଡନଇଁ ମା' ସହିତ ତାଳଦେଇ କହେ—'ସେ କି ବାସ କରରେ ତାଡ଼ାବଲି ଥାମ ଏକଟୁ ଦାଁଡ଼ା ପୁକୁରେଇ ଏଇ କାଛେନା ଲିଚୁର ଏକ ଗାଛ ଆଛେନା...'

ବସ୍ ଦେହରେ କଣ୍ଡକ୍ଟରର ଥାପଡ଼ ମରା ଶବ୍ଦରେ କଲ୍ୟାଣୀ ସଚେତନ ହୋଇଉଠେ । ବାଳକଟି ତା' ସ୍ୱରରେ ଚିତ୍କାର କରୁଥିଲା—ଏହି ଆସିଗଲା ଚରପାଡା, ଚରପାଡା । ଏକ ସମୟରେ ଚରପାଡ଼ାରେ ଜଙ୍ଗଲ ଥିଲା । ରାତିରେ ବିଲୁଆ ଡାକୁଥିଲେ । ବର୍ତ୍ତମାନ ବସ୍ତିଟି ସୁଉଚ୍ଚ ଅଟ୍ଟାଳିକାରେ ପରିପୂର୍ଣ୍ଣ । ଔଷଧ ପଥ୍ୟରେ ଦୋକାନ, ପଲିଟେକ୍‌ନିକାଲ, ମେଡ଼ିକାଲ୍ କଲେଜ ହସ୍‌ପିଟାଲର ବୃହତ୍ କ୍ୟାମ୍ପସ୍ । ରାସ୍ତାରେ ବସ୍, ରିକ୍‌ସା ଓ ମଣିଷଙ୍କ ଗହଳି । ସେତେବେଳେ ଗୋଟିଏ ମାତ୍ର ହସ୍‌ପିଟାଲ ଥିଲା—ସୂର୍ଯ୍ୟକାନ୍ତ ହସ୍‌ପିଟାଲ । ବ୍ରାହ୍ମପଲ୍ଲୀରେ ଲିଟନ ମେଡ଼ିକାଲ ସ୍କୁଲ ଥିଲା । କଲ୍ୟାଣୀର ଜଣେ ଖୁଡୁତାପୁଅ ଭାଇ ଏହି ସ୍କୁଲରେ ପଢୁଥିଲା । ଭାଇଙ୍କ ହାତଧରି କଲ୍ୟାଣୀ କେତେଥର ସେହି ହଳଦିଆ ରଙ୍ଗର ସ୍କୁଲକୁ ଯାଇଥିଲା । ଭାଇଙ୍କର ବନ୍ଧୁମାନେ ତାକୁ ଆଇସ୍‌କ୍ରିମ୍ ଖାଇବାକୁ ଦେଉଥିଲେ, କହୁଥିଲେ—'ମଣିଷର କଙ୍କାଳ ଦେଖିବୁ ? ମଲା ମଣିଷକୁ କାଟୁ ଦେଖିବୁ ?' କଲ୍ୟାଣୀ ମୁଣ୍ଡହଲାଇ କହୁଥିଲା—ନା, ସେ ଦେଖିବ ନାହିଁ । ତା'ଠାରୁ ବରଂ ଘାଟରେ ବସି ସେମାନଙ୍କର ସନ୍ତରଣ ଦେଖିବା ପାଇଁ ତାକୁ ଭଲ ଲାଗୁଥିଲା । ଚରପାଡା ମୋଡ଼ ନିକଟରେ ବସ୍‌ରୁ ପ୍ରାୟ ଅର୍ଦ୍ଧେକ ଯାତ୍ରୀ ଧାଡ଼ିବାନ୍ଧି ଓହ୍ଲାଇଗଲେ । ଅବଦୁଲ ଜବାର ମଧ୍ୟ ସେହିଠାରେ ଓହ୍ଲାଇଗଲା । ଥରେ ମାତ୍ର ପଛକୁ ଚାହିଁଲା ନାହିଁ । ବସ୍‌ରେ ଦୁଇଜଣ ମହିଳା ଥିଲେ । ଜଣଙ୍କର ସମଗ୍ର ଶରୀର କଳା ବୁର୍ଖାରେ ଆବୃତ, ଅନ୍ୟ ଜଣକ ପିନ୍ଧିଥିଲେ ଲାଲ୍‌ରଙ୍ଗର ସିଲ୍‌କ ଶାଢ଼ି । ସେମାନଙ୍କ ଆଡ଼କୁ ଚାହିଁ କଲ୍ୟାଣୀ ହସେ । ପଚାରେ—ଆପଣମାନଙ୍କର ଘର କ'ଣ ଏହିଠାରେ ?

ଲାଲ ସିଲ୍‌କ ଶାଢ଼ି ପିନ୍ଧିଥିବା ମହିଳାଜଣକ ମୁଣ୍ଡ ହଲାଇ ହଁ କହିବା ପରେ ଅନ୍ୟ ଦିଗକୁ ମୁହଁ ବୁଲାଇ ନିଅନ୍ତି । କଲ୍ୟାଣୀ କଣ୍ଡକ୍ଟରକୁ କୁହେ—ମୁଁ କାଳିବାଡ଼ିରେ ଓହ୍ଲାଇବି ।

କଣ୍ଡକ୍ଟର ଧାତବ ସ୍ୱରରେ ଉତ୍ତର ଦିଏ—ବସ୍ କାଳିବାଡ଼ି ଯାଏନାହିଁ ।

—ତେବେ କେଉଁଠାରେ ଓହ୍ଲାଇବାକୁ ହେବ ?

—ପ୍ରେସ୍‌କ୍ଲବ ସମ୍ମୁଖରେ । ଟଙ୍କା ଗଣୁ ଗଣୁ କଣ୍ଡକ୍ଟର କୁହେ ।

ସହରଟି ତାକୁ ଖୁବ୍ ଅଚିହ୍ନା ଅଚିହ୍ନା ଲାଗେ, ପ୍ରେସ୍‌କ୍ଲବ ଦିଗକୁ ଯିବାକୁ ହେଲେ ବାଟରେ ଦୁଇଟି ସିନେମା ହଲ୍ ପଡ଼େ—ଅଜନ୍ତା ଓ ଛାୟାବାଣୀ । ଛାୟାବାଣୀ କ'ଣ ଅମରାବତୀ ନାଟ୍ୟମନ୍ଦିର ? କଲ୍ୟାଣୀ ଅଳକା ହଲ୍‌ରେ ସିନେମା ଦେଖୁଥିଲା । ସେତେବେଳେ ସହରରେ ଏହି ଗୋଟିଏ ମାତ୍ର ସିନେମାହଲ ଥିଲା । ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା ସବୁ ଛବି ପ୍ରଦର୍ଶିତ ହେଉଥିଲା । ଏକ ସମୟରେ କଲିକତା, ବମ୍ବେରୁ ଛବି ଆସିବା ବନ୍ଦ

ହୋଇଗଲା, ବୟସ୍କମାନେ ବାରଣ୍ଡାରେ ବସି ଦିଲୀପକୁମାର ଓ ମଧୁବାଲାଙ୍କୁ ଦେଖି ନପାରିବା ଗ୍ଲାନିରେ ଶୋକପ୍ରକାଶ କରି ଦୀର୍ଘଶ୍ୱାସ ତ୍ୟାଗ କରୁଥିଲେ । କଲ୍ୟାଣୀର ମନେଅଛି ଛବି ରିଲିଜ ହେବା ସଙ୍ଗେସଙ୍ଗେ 'ଶାପମୋଚନ' 'ସବାର ଓପରେ', 'ଅଗ୍ନିପରୀକ୍ଷା' ଲୋକମାନେ ଲାଇନ ଦେଇ ଦେଖୁଥିଲେ । ଶରିଫାର ଜଣେ ମାମୁ କଲ୍ୟାଣୀକୁ 'ସବାର ଓପରେ' ଛବିଟି ଦୁଇଥର ଦେଖାଇଥିଲେ । କଲ୍ୟାଣୀ କାନ୍ଦି କାନ୍ଦି ଦୁଇଥରଯାକ ରୁମାଲ ଭିଜାଇ ଦେଇଥିଲା । 'ଫେରାଇ ଦିଅ ମୋର ସେହି ବାରଟି ବର୍ଷ' ଶୁଣି ସେଦିନର ଅବୋଧ କଲ୍ୟାଣୀର ଚକ୍ଷୁରୁ ଯେଉଁ ଅଶ୍ରୁ ଝରିଥିଲା, ପୁନର୍ବାର ସେହି ଅଶ୍ରୁହିଁ ନୂଆକରି ତା' ଚକ୍ଷୁରୁ ଝରିପଡ଼େ, ଛବି ବିଶ୍ୱାସଙ୍କ ପାଇଁ ନୁହେଁ, ନିଜପାଇଁ– ନିଜର ହଜିଯାଇଥିବା ତିରିଶ ବର୍ଷ ଫେରି ପାଇବା ପାଇଁ ସେ ବ୍ୟାକୁଳରେ ତା'ର ଦୁଇହାତକୁ ବଢ଼ାଏ–ହେଲେ ତା'ର ତୃଷାର୍ତ୍ତ ଆଙ୍ଗୁଳି କେବଳ ଶୂନ୍ୟତାକୁ ଛୁଇଁ ଫେରିଆସେ । 'ପ୍ରେସ୍‌କ୍ଲବ, ପ୍ରେସ୍‌କ୍ଲବ' ବୋଲି ଚିତ୍କାର ଶୁଣି ମହିଳା ଦୁଇଜଣ ଉଠି ଠିଆହେଲେ । କଲ୍ୟାଣୀ ବି ଠିଆହେଲା, କଣ୍ଡକ୍ଟରକୁ ପଚାରିଲା–କାଳିବାଡ଼ି କେଉଁ ଦିଗରେ ? ପିଲାଟି ନିଜର ଓଠ ଟେକି ଦେଖାଇଦେଲା ଏଇ ସିଧା । ଓହ୍ଲାଇ ପଡ଼ିବା ପରେ ବସ୍‌ଟି ଦ୍ରୁତବେଗରେ ପଛକୁ ବୁଲି ଚାଲିଗଲା । ସମ୍ମୁଖରେ ନାଲିଇଟାରେ ନିର୍ମିତ ଉଚ୍ଚ ପାଣିଟାଙ୍କି, ଟାଙ୍କିଟିକୁ କଲ୍ୟାଣୀ ଚିହ୍ନିପାରିଲା, ଅଳ୍ପ ବୟସ ହୋଇଥିବା ସମୟରେ ସେ ଜ୍ୟୋତିପ୍ରକାଶ ନିକଟରେ ଜିଦ୍‌ଧରି କାନ୍ଦି କାନ୍ଦି କହୁଥିଲା ତାକୁ ଯେପରି ସେ ସେହି ଟାଙ୍କିଟିର ଶୀର୍ଷକୁ ଦିନେ ନେଇକରି ଯାଉ, ସେହିଠାରେ ଛିଡ଼ାହୋଇ ସେ ସମ୍ପୂର୍ଣ୍ଣଭାବେ ସହରଟିକୁ ଦେଖିବ । ଟାଙ୍କିଟିକୁ ଦେଖିବା ପରେ ସେହି ଅପୂର୍ଣ୍ଣ ଇଚ୍ଛାଟି ତା'ର କେଶ ପାଚିଥିବା ବୟସରେ ମଧ୍ୟ ଏହି ଘୋର ଅସମୟରେ ତା' ଅନ୍ତର ମଧ୍ୟରେ ନିଃଶବ୍ଦରେ ଜାଗିଉଠିଲା । ଏହାରି ପାଖରେ ଥିଲା ଅଳକା ହଲ୍, ତା' ପାଖକୁ ବିଦ୍ୟାମୟୀ ସ୍କୁଲ । ସହରଟିର ଅନେକ ପରିବର୍ତ୍ତନ ଘଟିଛି, ସୁନିବିଡ଼ ଛାୟା ନିଝୁମ ରାତିର ନିର୍ଜନତା ଅପସରି ଯାଇଛି । ତା' ବଦଳରେ ମଣିଷଙ୍କ ଗହଳି, ହୋହଲ୍ଲା ଓ ରିକ୍‌ସା ଭିଡ଼ରେ ସ୍ଥାନଟି ପରିପୂର୍ଣ୍ଣ ହୋଇଉଠିଛି । କଲ୍ୟାଣୀ ଗୋଟିଏ ରିକ୍‌ସା ଡାକିଲା । ସେ ଖୁବ୍ କ୍ଷୁଧାର୍ତ୍ତ, ଘଡ଼ିରେ ଦୁଇଟା ବାଜିଛି, ଅଧଘଣ୍ଟାଏ ଆଗେଇଗଲେ ଅଢ଼େଇଟା ହେବ । କ୍ଷୁଧାର ସମସ୍ତ କିଛି ଯନ୍ତ୍ରଣାକୁ ପାସୋରି ପକାଇ ଦୀପେନ ତା' ମାଆର ସହରକୁ ତନ୍ମୟ ହୋଇ ଦେଖୁଥିଲା ।

ରିକ୍‌ସା କାଳିବାଡ଼ି ଅଭିମୁଖେ ଆଗେଇ ଚାଲିଥିଲା । ରିକ୍‌ସାବାଲା ଲୁଙ୍ଗି ଓ ଗଞ୍ଜି ପିନ୍ଧିଛି, ଦୁଇଓଠ ମଝିରେ ତା'ର ଅଧାଖିଆ ବିଡ଼ି । ସେ ପଚାରିଲା–'କାଳିବାଡ଼ିର କେଉଁଠାରେ ଓହ୍ଲାଇବ ।' ପୂର୍ବେ ହରିନାରାୟଣଙ୍କ ଘର କହୁଥିଲେ ରିକ୍‌ସାବାଲାମାନେ

ଚିହ୍ନି ପାରୁଥିଲେ । ବର୍ତ୍ତମାନ ଆଉ କ'ଣ ଚିହ୍ନି ପାରିବ ? କଲ୍ୟାଣୀ ରିକ୍ସାବାଲାକୁ ବିପିନ ପାର୍କର ନାମ କହିଲା । ରିକ୍ସାବାଲା ଭିଡ଼ କାଟି କାଟି ଆଗେଇ ଚାଲୁଥିଲା । ଦୀପେନ ରାସ୍ତାକଡ଼ରେ ଥିବା ସାଇନବୋର୍ଡ଼ଗୁଡ଼ିକୁ ପଢୁ ପଢୁ ହଠାତ୍ ପଚାରିଲା—ମା, ତୁମର ବ୍ରହ୍ମପୁତ୍ର କେତେ ଦୂର ?

—ଏଇ ତ ଆଗରେ ।

—ମା, ତୁମର ପ୍ରିୟ ବ୍ରହ୍ମପୁତ୍ରରେ ତୁମେ ଅନେକ ଦିନ ପରେ ପହଁରିବ, ନା ? ତୁମର ବ୍ରହ୍ମପୁତ୍ରରେ ଷ୍ଟିମର ଚାଲେନା ? ଆଚ୍ଛା ମା, ନଦୀର ଅପର ପାର୍ଶ୍ୱଟିକୁ କ'ଣ ସହଜରେ ଦେଖିହେବ ? ମୁଁ ମୋର ଦୂରବୀକ୍ଷଣ ଯନ୍ତ୍ରଟା ଯେ ଆଣିନାହିଁ, କିପରି ଦେଖିବି ? ତୁମେ କହୁଥିଲ ନା ସେପଟରେ କାଶତଣ୍ଡୀ ବଣ ଅଛି ? ଅପୁ-ଦୁର୍ଗା ରେଳ ଦେଖିବାକୁ କାଶତଣ୍ଡୀ ବଣରେ ଯେପରି ଦୌଡ଼ିଥିଲେ, ସେଇପରି କାଶତଣ୍ଡୀ ବଣ ?

—ହଁ ରେ ।

—ଏବେ ସୁଦ୍ଧା ତୁମର ପହଁରିବା ମନେଅଛି କି ?

—ଦୁର୍ ବୋକା, ପିଲାବେଳେ ଯିଏ ଯାହା ଶିଖିଥାଏ ତାହା କ'ଣ କେବେ ଭୁଲେ ?

—ତେବେ ଥରେ କିପରି ଦିଦିର ଟ୍ରାନ୍ସଲେସନ କରିପାରିଲ ନାହିଁ, ଦିଦି କହୁଥିଲା ।

—ସେକଥା ଏକଥା ସମାନ ନୁହେଁ । କଲିକତାର ଟ୍ରାନ୍ସଲେସନ ସବୁ କଠିନ କଠିନ । ଆଉ ଏ ତ ପହଁରିବା କଥା । ମୁଁ ତ ଦିନତମାମ ପୋଖରୀରେ ପହଁରେ । ଗପ କରୁ କରୁ ତୋତେ ଏକଥା କହିନାହିଁ ?

—ଦିନତମାମ ପହଁର ? ମୁଁ ମଧ୍ୟ ତୁମ ପୋଖରୀରେ ପହଁରିବି ।

—ନିଶ୍ଚୟ ।

—ମୁଁ ତ ପହଁରା ଜାଣେନା ମା' !

—ତୋତେ ଶିଖାଇଦେବି । ମୋତେ ମଧ୍ୟ ଜ୍ୟୋତିଭାଇ ପହଁରା ଶିଖାଇଥିଲେ । କଦଳୀ ଗଡ଼ଧରି ପହଁରା ଶିଖିଥିଲି ।

—ମା, ତୁମେ ଥରୁଛ କାହିଁକି ?

—କାହିଁ, ନା' ତ !

—ଏହି ଯେ ଥରୁଛ । ଏହି ଯେ ମୋର ହାତ ଧରିଛ, ତୁମ ହାତ ଥରୁଛି ।

—ମୋର ଖୁବ୍ ଆନନ୍ଦ ହେଉଛି ଦୀପେନ । ଏଇ ଯେଉଁ ରାସ୍ତା ଦେଖୁଛୁ, ଜାଣୁ ଏଇ ରାସ୍ତାରେ ମୁଁ ସ୍କୁଲକୁ ଯାଉଥିଲି ।

ଦୀପେନ ରାସ୍ତାର ସାଇନବୋର୍ଡ଼ ପଢୁ ପଢୁ କହେ—ଏଇ ସ୍ଥାନଟିର ନାମ ଦୁର୍ଗାଘର, ଏଠାରେ ଦୁର୍ଗାପୂଜା ହୁଏ, ଏଇଆ ନା ମା' ?

—ହଁ ।

ବ୍ରହ୍ମପୁତ୍ର ପାଇଁ କଲ୍ୟାଣୀର ମନ ବ୍ୟାକୁଳ ହୋଇଉଠେ । ଆହା, ମଣିଷକୁ କାହିଁକି ନଦୀ ଏତେ ଅଧିକ ଭାବରେ ମମତାମୟୀ ମନେହୁଏ ! ତିରିଶ ବର୍ଷପରେ ସେ ତା'ର ଶୈଶବର ଖେଳସାଥୀ ନଦୀକୁ ଦେଖିବ । ଗୋପନରେ ଭଲପାଉଥିବା ମନପରି ଦେହ ତା'ର ଥରଥର ହୋଇ କମ୍ପି ଉଠେ । ଦୁଇ ଆଖିରେ ଲୋତକ ଭରିଯାଏ । ଅଷ୍ଟମୀ ସ୍ନାନ ଦିନ ପହଁରି ପହଁରି ସେ ପ୍ରାୟ ନଈର ମଧ୍ୟଭାଗ ପର୍ଯ୍ୟନ୍ତ ଚାଲିଯାଉଥିଲା । ବର୍ଷା ଦିନର ଦୁଇକୂଳ ପ୍ଲାବନ କରି ବହିଯାଉଥିବା ନଦୀର ଚିତ୍ରପଟ ମନରେ ତା'ର ପ୍ରତିବିମ୍ବିତ ହୋଇଉଠେ । ସେ କଲିକତାରେ ଯାହାକୁ ପାଇଛି ତାକୁ ବ୍ରହ୍ମପୁତ୍ରର ଗପ ଶୁଣାଇଛି । ଜୟିଷା ଆଉ ଦୀପେନଙ୍କୁ କହିଛି—ଗଙ୍ଗାଠାରୁ ଆହୁରି ଯେ ଏକ ବଡ଼ ନଦୀଅଛି, ଜାଣିଛ ? ତା'ର ନାମ ବ୍ରହ୍ମପୁତ୍ର ।

କେବେ କେମିତି ଅନିର୍ବାଣ ଶୁଣି କହିଥିଲା—ଯଦି ନଦୀ ବିଷୟରେ ରଚନା ଶିଖାଇବ, ଶିଖାଇଦିଅ । ହୁଏତ ଏମାନଙ୍କ କାର୍ଯ୍ୟରେ ଆସିବ ।

ତିରିଶ ବର୍ଷକାଳ ନଦୀ କହିଲେ ସେ କେବଳ ବ୍ରହ୍ମପୁତ୍ରକୁ ହିଁ ବୁଝେ । ଜଳ କହିଲେ ସେ ବୁଝେ ମୟମନସିଂହର ଟିଉବ୍‌ୱେଲ ଜଳ । କଲିକତା ଜଳରେ ସ୍ନାନ କଲେ ସେ କିପରି ଦେହରେ ଅଠା ବୋଳିଲାପରି ଅନୁଭବ କରେ । ବାଳ ଜଟାଧରେ । ବାହାଘର ପରେ ପରେ ଅନିର୍ବାଣ ତାକୁ ଗଙ୍ଗାକୂଳକୁ ନେଇଯାଇଥିଲା । କଲ୍ୟାଣୀ କହିଥିଲା—ଆମ ବ୍ରହ୍ମପୁତ୍ରରେ ପ୍ରାଣପ୍ରାଚୁର୍ଯ୍ୟ ଭରି ରହିଛି ।

ଅନିର୍ବାଣ ଭ୍ରୂକୁଞ୍ଚନ କରି କହିଥିଲା—ତେବେ କ'ଣ ଗଙ୍ଗାରେ ତାହା ନାହିଁ ?

କଲ୍ୟାଣୀ ଉଦାସୀନ ଆଖିରେ ଉଭୟ ପାର୍ଶ୍ୱକୁ ଚାହୁଁଥିଲା ଏବଂ ନାକରେ ଲୁଗା ଅଞ୍ଚଳ ଚାପି କହୁଥିଲା—ଚାଲ ଚାଲ, ଏଠାରେ ଗଞ୍ଜେଇର ଉତ୍କଟ ଧୂଆଁରେ ଛିଡ଼ାହେବା ମୁସ୍କିଲ ।

—ତୁମେ କହୁଥିଲ ନା ନଦୀକୂଳରେ କିଛି ସମୟ ଛିଡ଼ାହେବ ?

—ସେ କ'ଣ ଏଇ ନଦୀ ?

କଲ୍ୟାଣୀ ବ୍ରହ୍ମପୁତ୍ର କଥା ଭାବୁଥିଲା । ତା'ର ବକ୍ଷରୁ ଉଠିଆସୁଥିବା ଉତ୍ତାଳ ପବନ ଗଭୀର ନିଃସଙ୍ଗ ରାତିର ସ୍ୱପ୍ନ ମଧ୍ୟରେ ତାକୁ ଛୁଇଁ ଛୁଇଁ ଯାଉଛି । ଭରାନଦୀ ଉପରେ ପାଲଟଣା ନୌକା ଯାଏ, ଦୂରରୁ ଭାସିଆସେ ଭାଟିଆଲିର ସ୍ୱର—'ନାହିୟାରେ ନାଓୟେର ବାଦାମ ତୁଇଲା କୋନ ଦେଶେ ଦେଶେ ଯାଓ ଚଇଲା ।' ଗଙ୍ଗାର ଯାନ୍ତ୍ରିକ ଜୀବନ ଆଉ ଗୋଳିଆପାଣି ସମ୍ମୁଖରେ ଛିଡ଼ାହୋଇ କେବେ ବି କଲ୍ୟାଣୀ ବିନ୍ଦୁଏ ମାତ୍ର ସ୍ୱସ୍ତି ଅନୁଭବ କରିନାହିଁ । ସେ କାହାକୁ ବୁଝାଇପାରେନି ବ୍ରହ୍ମପୁତ୍ରର ସେଇ ହୃଦୟସ୍ପର୍ଶୀ ସ୍ୱଚ୍ଛ, ଶୁଦ୍ଧ, ଗଭୀର ଜଳର ସ୍ନିଗ୍ଧତା ସମ୍ପର୍କରେ । ଅନିର୍ବାଣ କହୁଥିଲା—'କଲ୍ୟାଣୀ, ତୁମେ ଏତେ ଅଧିକ ପରିମାଣରେ ନଷ୍ଟାଲଜିୟା ଭୋଗକର !' କଲ୍ୟାଣୀ ଦୀର୍ଘଶ୍ୱାସ ତ୍ୟାଗ କରେ ।

—ତୋତେ କ'ଣ ଭୋକ ଲାଗୁନାହିଁ ଦୀପେନ ?

—ମୁଣ୍ଡ ହଲାଇ ଦୀପେନ କୁହେ ତାକୁ ଭୋକ ଲାଗୁଛି ।

କଲ୍ୟାଣୀ କହିଲା—'ଏଇ ତ ଆମେ ପହଞ୍ଚିଗଲେଣି ବାବା । ଦେଖିବୁ ଏମାନେ ତୋତେ କେତେ ଭଳି ଭଳି ପଦାର୍ଥ ଖାଇବାକୁ ଦେବେ, କୋଳରୁ ଓହ୍ଲାଇବାକୁ ଦେବେ ନାହିଁ, କେତେ ଯେ କ'ଣ କିଣିଦେବେ ଦେଖିବୁ ।' କଲ୍ୟାଣୀର ପୁଅ ଦୀପେନ ଜାଣି ତୋତେ କେତେ ଆଦର କରିବେ—କଲ୍ୟାଣୀର ପୁଅ ପାଇଁ କରିବେ ନାହିଁ ତ କାହା ପାଇଁ କରିବେ ? ଇଏ ତ ସେଇ ସ୍ୱଦେଶୀ ବଜାର । ବଡ଼ବଜାରରେ ଯେଉଁ ମନ୍ଦିରଟି ଥିଲା, ସେଇଟା କେଉଁଠି—ହୁଡ଼ଖୋଲା ରିକ୍‌ସାରେ ବସି ନିକଟବର୍ତ୍ତୀ ଅଞ୍ଚଳକୁ ଅନୁସନ୍ଧିତ୍ସୁ ଦୃଷ୍ଟିରେ କଲ୍ୟାଣୀ ଚାହିଁରହେ । ଚକ୍‌ଚକ୍ କରୁଥିବା ଏକ ବିରାଟ ମିନାର ଉପରେ ତା'ର ଦୃଷ୍ଟି ସ୍ଥିର ହୋଇଯାଏ । କଲ୍ୟାଣୀ ପ୍ରଶ୍ନକରେ ଏହା କ'ଣ ଗୋଟାଏ ମନ୍ଦିର ନା କ'ଣ ?

ରିକ୍‌ସାବାଲା ରୁକ୍ଷ ସ୍ୱରରେ କୁହେ—ମନ୍ଦିର ମାନେ ? ଏଇଟା ଗୋଟାଏ ବଡ଼ ମସ୍‌ଜିଦ ।

—ଏଠାରେ ଯେଉଁ ମନ୍ଦିରଟି ଥିଲା, ସେଇଟା କୁଆଡ଼େ ଗଲା ?

—ମନ୍ଦିର ? ମନ୍ଦିରର କୌଣସି ଖବର ଦେବାପାଇଁ ରିକ୍‌ସାବାଲାଟି ସାମାନ୍ୟତମ ଆଗ୍ରହ ପ୍ରକାଶ କଲାନାହିଁ । ସେ ସମ୍ପର୍କରେ ଜାଣିବାପାଇଁ ଯେ କଲ୍ୟାଣୀର ଅତ୍ୟଧିକ

ଆଗ୍ରହ ଥିଲା ତାହା ମଧ୍ୟ ନୁହେଁ । ତେବେ ଯେତେହେଲେ ଗୋଟାଏ ପୁରୁଣା ସ୍ମୃତି, ବଡ଼ବଜାର ପାର ହୋଇଗଲେ ହିଁ ଡେଙ୍ଗାଭାଇଙ୍କ ପରି ଆଖିଆଗରେ ଛିଡ଼ା ହୋଇଯାଏ । ଡେଙ୍ଗାଭାଇ—ସେ ବି ଏକ ମଜାର ବସ୍ତୁ । କଲ୍ୟାଣୀ ଯେତେବେଳେ ଚତୁର୍ଥ କିମ୍ବା ପଞ୍ଚମ ଶ୍ରେଣୀରେ ପଢୁଥିଲା, ନେତ୍ରକୋଣାଠାରୁ ଡେଙ୍ଗା ପତଳା ସ୍ୱାସ୍ଥ୍ୟର ଗୋଟିଏ ପିଲା ଆସିଥିଲା । ଷୋଳବର୍ଷ ବୟସ ବେଳେ ଉଚ୍ଚତା ଛ'ଫୁଟ ହୋଇଥିଲା । ସେ ଥିଲେ କଲ୍ୟାଣୀର ନିକଟ ସମ୍ପର୍କୀୟ ଆତ୍ମୀୟ । ରାତିଦିନ କଚେରି ଘରେ ଶୋଇରହେ । ଅପରାହ୍ଣ ହେଲେ ଦେହରେ କନ୍ଥା ଘୋଡ଼ି ହୋଇ ଜାମୁଗଛ ତଳେ ବସେ । ଏପରି ଭାବରେ ସେ ଥରିବାକୁ ଲାଗେ ଯେ ଦାନ୍ତକୁ ଦାନ୍ତ ବାଜି ଶବ୍ଦ ସୃଷ୍ଟି ହୁଏ । କଲ୍ୟାଣୀ ତା' ସାଥୀମାନଙ୍କ ସହ ଖେଳୁ ଖେଳୁ ଧାଇଁଆସି ଦେଖନ୍ତି ସେ ଖୁଁ ଖୁଁ ହୋଇ କାଶିବାରେ ଲାଗିଥାଏ । ଅନେକ ଥର କଲ୍ୟାଣୀ ଆସି ତାଙ୍କ ପାଖରେ ବସିଛି, ପ୍ରଶ୍ନ କରିଛି—ଡେଙ୍ଗା, ତୁମେ କେଉଁ ଶ୍ରେଣୀରେ ପଢ଼ ?

ଡେଙ୍ଗା ମୁହଁରେ ଗମ୍ଭୀର ଭାବ ପ୍ରକାଶ କରି କୁହେ—ଟୁ'ରେ ।

ଏତେବଡ଼ ପିଲା ଟୁ'ରେ ପଢ଼େ ଶୁଣି କଲ୍ୟାଣୀ ହସି ହସି ଗଡ଼ିଯାଏ । ସେ ବୁଝିପାରେନା ଏତେବଡ଼ ପିଲାଟାଏ କିପରି ଏତେ ନିମ୍ନଶ୍ରେଣୀରେ ପଢ଼େ । ତା'ପରେ ଅତି ସ୍ୱାଭାବିକ ଭାବରେ କୁହେ—ବୁଝୁଛି ତୁମେ ବୋଧହଏ ବହୁବାର ଫେଲ୍ ହୋଇଛ ?

ଡେଙ୍ଗା କୁହେ—ନା, ମୁଁ ଅଙ୍କରେ ଶହେରୁ ଶହେ ନମ୍ବର ପାଏ ।

ଘରର ସମସ୍ତ ଲୋକ ପିଲାଟିକୁ ଡେଙ୍ଗା ବୋଲି ଡାକୁଥିଲେ । ଏଥିରେ ତା'ର କୌଣସି ମାନସିକ ପ୍ରତିକ୍ରିୟା ପ୍ରକାଶ ପାଏ ନାହିଁ ବରଂ ସେ ଏଥିରେ ଖୁସି । ଅନ୍ୟାନ୍ୟ ବୟସ୍କମାନଙ୍କ ଭଳି କଲ୍ୟାଣୀ ମଧ୍ୟ ତାକୁ ଡେଙ୍ଗା ବୋଲି ସମ୍ବୋଧନ କରେ । ଏହା ଶୁଣି ସରଳାବାଳା ରାଗିଉଠନ୍ତି । କହନ୍ତି ଡେଙ୍ଗା କ'ଣ ରେ ? ଡେଙ୍ଗା କ'ଣ ? ତା'ର କ'ଣ ନାଁ ନାହିଁ ? ସେ ତୋଠାରୁ ଛୋଟ ନା ବଡ଼ ? ଭାଇ ବୋଲି ଡାକିବୁ ।

ଏହା ପରଠାରୁ କଲ୍ୟାଣୀ ଯଦିଓ ଭାଇ ବୋଲି ଡାକିଲା ହେଲେ 'ଜୟନ୍ତ' ଡାକିଲା ନାହିଁ । ଡାକିଲା ଡେଙ୍ଗାଭାଇ । କଲ୍ୟାଣୀ ମନରୁ ସନ୍ଦେହ ଦୂର ହେଲା ନାହିଁ । ଦିନେ ସରଳାବାଳାଙ୍କୁ ପଚାରିଲା—ମା', ଡେଙ୍ଗାଭାଇ କୁଆଡ଼େ ଅଙ୍କରେ ଶହେରୁ ଶହେ ନମ୍ବର ରଖେ ?

—ବୋଧହୁଏ ରଖେ ।

ମୁଁ ଯଦି ତାଙ୍କୁ ବାଉଁଶ ଅଙ୍କ ଦେବି, ସେ କ'ଣ ସମାଧାନ କରିଦେଇ ପାରିବେ ?

—ପାରିଲେ ପାରିବ ।

—ମନେହୁଏ କଚ୍ଛପର ଅଙ୍କଟା ପାରିବେ ନାହିଁ ।

—ମୁଁ ତାହା କହିପାରିବି ନାହିଁ ।

—ସେ ତ ଏତେ ବଡ଼, ଟୁ-ରେ ପଢ଼େ କାହିଁକି ?

—ଡେଙ୍ଗା ଭୀଷଣ ଅସୁସ୍ଥ । ହସ୍ପିଟାଲରେ ଭର୍ତ୍ତି ହେବ । ସେ ଯେ ଟୁ-ରେ ପଢ଼େ, ଏହା ତ ଖୁବ୍ ଅଧିକ ।

କଲ୍ୟାଣୀ ନିଜେ ହିଁ ପରେ ଶୁଣିଛି ଡେଙ୍ଗାଭାଇ ରାତି ରାତି ଧରି କାଶିବାରେ ଲାଗେ । କାଶ ସହିତ ଡେଙ୍ଗାର ତଣ୍ଟିରୁ ରକ୍ତ ବାହାରେ । ଦିନେ ଘରର ବୟସ୍କ ଲୋକମାନେ ଡେଙ୍ଗାଭାଇଙ୍କୁ ହସ୍ପିଟାଲରେ ଛାଡ଼ିଦେଇ ଆସିଲେ । ଡେଙ୍ଗାଭାଇ ଆଉ ଫେରିଲେ ନାହିଁ ।

ଡେଙ୍ଗାଭାଇ ଜାମୁଗଛ ତଳେ ଛିଡ଼ାହୋଇ ରହିଥିଲେ, ପ୍ରାୟ ଆକାଶକୁ ଚାହିଁ ଦେଖିଲାଭଳି ତାଙ୍କ ମୁହଁକୁ ଚାହିଁବାକୁ ପଡ଼ିଥାଏ । କାଳିବାଡ଼ିର ମନ୍ଦିର ଦିଗକୁ ପ୍ରାୟ ସେହିପରି କଲ୍ୟାଣୀ ଚାହିଁରୁହେ । ହୁଡ୍ ଖୋଲା ରିକ୍ସାରେ ବସି ଉଭୟ ଦିଗକୁ ଚାହିଁ ଦେଖିବାରେ ଲାଗେ । ଡେଙ୍ଗାଭାଇ ଭଳି କିଛି ଗୋଟାଏ ଦେଖିବା ପାଇଁ ଖୋଜେ । ଅସୁସ୍ଥତା ଭୋଗୁଥିବା, ଟୁ-ରେ ପଢୁଥିବା ଡେଙ୍ଗାଭାଇର କଥା ସ୍ମରଣ କରି ବଡ଼ବଜାର ରାସ୍ତାରେ ଶୈଶବ-କୈଶୋର-ଯୌବନ ଅତିକ୍ରମ କରିଥିବା କଲ୍ୟାଣୀର ହଠାତ୍ ତା' ପାଇଁ ମାୟା ସୃଷ୍ଟିହୁଏ । ବଡ଼ବଜାର ପାର ହୋଇ କାଳିବାଡ଼ିର ରାସ୍ତାକୁ ଉଠୁଥିବା ସମୟରେ ମନ୍ଦିରଟି ଉପରେ ତା'ର ଦୃଷ୍ଟିପଡ଼େ । ଶିଉଳି ଧରିଥିବା ଭଗ୍ନ ଶରୀର ଭେଦକରି ବଟବୃକ୍ଷଟିଏ ବାହାରିଛି । ରିକ୍ସାବାଲା ହଠାତ୍ ବ୍ରେକ୍‌ଦେଇ କୁହେ—'ଏଇ ଯେ ଆପଣଙ୍କ ବିପିନ ପାର୍କ ଆସିଯାଇଛି ।' ରିକ୍ସାରୁ ଓହ୍ଲାଇ ସେ ପାର୍କରେ ଚାଲିବାକୁ ଲାଗେ । ଆହା ! ଏହି ପାର୍କରେ ସେ କେତେ ଯେ ଅପରାହ୍ଣ ଅତିବାହିତ କରିଛି, ଘରେ ଏମ୍‌ପ୍ରେସ ଖେଳିବାର ବାହାନା କରି ଘର ଛାଡ଼ି ଲୁଚି ଲୁଚି ଚାଲିଆସିଛି । ପାର୍କର ଘାସ ଉପରେ ଶୋଇଥିବା ସମୟରେ କେବେ କେବେ ନିଦ ଲାଗିଯାଇଛି । ଜଳର ଯେଉଁ ଝିର୍‌ଝିର୍ ମଧୁର ସ୍ୱର ସେଥିରେ କି ନିଦ ଆସି ରହିପାରିବ ! କିନ୍ତୁ କାହିଁ କେଉଁଠି ସେହି ସବୁଜ ସ୍ନିଗ୍ଧ ନିର୍ଜନତା ? ତିନି ଚାରିଗୋଟି ଗୋରୁ ଶୋଇରହି ପାକୁଳି କରୁଛନ୍ତି । ଚାରିଆଡ଼େ

ବସ୍ତିବାସିନ୍ଦାଙ୍କ ଅସ୍ଥିକଙ୍କାଳସାର ଶିଶୁମାନେ ଛଳଛଳ ଆଖିରେ ଚାହିଁ ରହିଛନ୍ତି । ପିନ୍ଧିବା ପାଇଁ କପଡ଼ା ନାହିଁ, କଟୀରେ କଳା ସୂତାରେ ଘୁଙ୍ଗୁର ବନ୍ଧାହୋଇଛି । କଲ୍ୟାଣୀ ଦେଖିଛି କଲିକତାରେ ଏହିପରି ଉଦ୍‌ବାସ୍ତୁ ଦଳ ଅଜାଡ଼ି ହୋଇପଡ଼ିଛି । ତେବେ କ'ଣ ତା' ଦେଶକୁ ମଧ୍ୟ ଏହା ସଂକ୍ରମିତ ହୋଇଛି ? ସବୁକିଛି ଭୁଲିଯାଇ ସେ ବ୍ରହ୍ମପୁତ୍ର ନିକଟକୁ ଯିବାପାଇଁ ଆଗ୍ରହୀ ହୁଏ । ହୃଦୟର ଦୁଇକୂଳକୁ ଲଙ୍ଘନ କରି ବହିଯାଉଥିବା ବ୍ରହ୍ମପୁତ୍ରକୁ ସେ ମନଭରି ଦେଖିବାକୁ ଚାହେଁ । ଦିନ ରାତି ନମାନି ଏହି ବ୍ରହ୍ମପୁତ୍ରରେ ସେ ଜଳକନ୍ୟା ପରି ଭାସିଛି, ବୁଡ଼ିଛି । ଏକ ଶୀର୍ଣ୍ଣ ଜଳଧାର ଦିଗକୁ ଚାହିଁ ମନେ ମନେ ଭାବେ କେଉଁଠାରେ ସେହି ବ୍ରହ୍ମପୁତ୍ର ? ଧୂ ଧୂ ଚର, ମଣିଷ ଚାଲି ଚାଲି ଏପାରିରୁ ସେପାରିକୁ ଯାଉଛନ୍ତି । ଏହିଠାରେ ହିଁ ତ ବ୍ରହ୍ମପୁତ୍ର ଥିଲା, ବିପିନ ପାର୍କ ଆଗରେ, କଲ୍ୟାଣୀ ନିଶ୍ଚୟ ଭୁଲ କରୁନାହିଁ, ତା'ର ବା ଭୁଲ ହେବ କାହିଁକି—ତିରିଶ ବର୍ଷ ଧରି ସେ ଏହି ନଦୀ, ନଦୀ କୂଳରେ ଥିବା ସବୁଜ ପଡ଼ିଆ, ପାଣି ଘାସକୁ ହୃଦୟ ମଧ୍ୟରେ ଅତି ଯତ୍ନରେ ସାଇତି ରଖିଛି, ତେବେ ? ତେବେ ତା'ର ଶୈଶବ କୈଶୋରର ଉଚ୍ଛଳ ବ୍ରହ୍ମପୁତ୍ର କ'ଣ ଏଇ ଶୀର୍ଣ୍ଣ ଜଳଧାରା ! ଏଇ ଗୋଳିଆ, ସ୍ଥିର ନିଥର କ୍ଳାନ୍ତ ଜଳ କ'ଣ ବ୍ରହ୍ମପୁତ୍ରର ବୋଲି ତାକୁ ଭାବିନେବାକୁ ହେବ ? ନା, ସେ କିଛି ଭୁଲ୍ ଦେଖୁଛି ? ଭୁଲ ହେବାର କଥା ତ ସେପରି କିଛି ନାହିଁ । ସ୍ଥିର ଏବଂ ନିର୍ବାକ୍ ହୋଇ କଲ୍ୟାଣୀ ଛିଡ଼ା ହୋଇଯାଏ । କଲ୍ୟାଣୀକୁ ହଲାଇ ଦେଇ ଦୀପେନ୍ ପ୍ରଶ୍ନ କରେ—ମା, ଏଠାରେ ଜଳ କାହିଁକି ? ଏଇଟା ବୋଧହୁଏ ଗୋଟିଏ ନାଳ ?

ଲଜ୍ଜା ଓ ଦୁଃଖରେ କଲ୍ୟାଣୀର କଣ୍ଠ ସ୍ଥିର ହୋଇଆସେ, କୁହେ—'ବୋଧହୁଏ' । ଦୀପେନର ହାତଧରି ସେ ବିପରୀତ ଦିଗକୁ ଚାଲିବାକୁ ଲାଗେ । ଚାଲୁଥିବା ସମୟରେ ସେ ଉଭୟ ଦିଗକୁ ଚାହିଁ ଦେଖିବାକୁ ଲାଗେ; ଗୁଦାରାଘାଟ, ଡାକବଙ୍ଗଳା, ଏସ୍. କେ. ହସ୍ପିଟାଲ ସମସ୍ତ କିଛି ପୂର୍ବପରି ରହିଛି, କୋତୟାଲି ଥାନାଟି ମଧ୍ୟ ମୁହଁ ଗମ୍ଭୀର କରି ଛିଡ଼ାହୋଇ ରହିଛି, କଲ୍ୟାଣୀର ଜଣେ ବଡ଼ବାପା ଏଠାକାର ବଡ଼ ଦାରୋଗା ଥିଲେ । କଲ୍ୟାଣୀକୁ ଯେତେବେଳେ ପାଞ୍ଚ-ଛଅ ବର୍ଷ ବୟସ ସେହି ବଡ଼ବାପା ତାକୁ ହାଜତ ଦେଖାଇବା ପାଇଁ ନେଇଥିଲେ । ଲୁହା ଗାରଦ ମଧ୍ୟରେ କେତେକ ମଣିଷଙ୍କୁ ଦେଖାଇ କହିଥିଲେ—ଏମାନେ ହେଉଛନ୍ତି ଚୋର । ସେ ଆଶ୍ଚର୍ଯ୍ୟ ହୋଇ କହିଥିଲା—'ଚୋର କାହାନ୍ତି; ଏମାନେ ତ ମଣିଷ !' ଏହାଶୁଣି ବଡ଼ବାପା ଠୋ ଠୋ କରି ହସିଥିଲେ । ଥାନା ସମ୍ମୁଖରେ କଲ୍ୟାଣୀ ମୁହୂର୍ତ୍ତକ ପାଇଁ ଛିଡ଼ା ହୋଇଗଲା, କାନ ପାତିଲା ବେଳକୁ ମନେହେଲା ଯେପରି ସେହି ହସର ଶବ୍ଦ ତା'ର କାନରେ ବାଜୁଛି । ଚିହ୍ନା କାଛର କୋଠାଗୁଡ଼ିକ ମଝିରେ ମଝିରେ ନୂଆ ନୂଆ କୋଠାଘର ତିଆରି ହୋଇଛି । କୁମାର

ଉପେନ୍ଦ୍ର କିଶୋରଙ୍କ ଏକତାଲା ଘରଟି ପୂର୍ବବତ୍ ରହିଛି । ଦୂରକୁ ଚାହିଁଲେ ଦେଖାଯାଏ ଶମ୍ଭୁଗଞ୍ଜ ବ୍ରିଜ । ଏକାନ୍ତ ନିଃସଙ୍ଗ, ଶାନ୍ତ, ଖରାର ତେଜ ସହ୍ୟ କରୁଥିବା ରେଳ ବ୍ରିଜଟି ପାଇଁ ତା'ର ବଡ଼ ମମତା ଜାତ ହୁଏ । କଲ୍ୟାଣୀର ମନ ମଧ୍ୟରେ ଏହି ସହରଟି ଚିତ୍ରପରି ଆଙ୍କି ହୋଇ ରହିଛି । ଆଖି ବୁଜିଦେଲେ ସବୁକିଛି ଦୂରେଇଯାଇ ମାନସପଟରେ ଉଦ୍ଭାସିତ ହୋଇଉଠେ ଏକ ଛୋଟିଆ ଶାନ୍ତ ସହର, ସହରଟିର ପ୍ରାୟ ସଭିଏଁ ସଭିଙ୍କର ପରିଚିତ, କେହି କାହାରିକୁ ଠେଲି ଆଗକୁ ଚାଲିଯିବା ପାଇଁ ଚେଷ୍ଟା କରୁନାହାନ୍ତି, ରାସ୍ତାଘାଟଠାରୁ ଆରମ୍ଭକରି ଖେଳପଡ଼ିଆ ଓ ବଜାର ପର୍ଯ୍ୟନ୍ତ ଯିଏ ଯେଉଁଠାରେ ଯାହାକୁ ଦେଖେ ଭଲମନ୍ଦ ପଚାରି ବୁଝନ୍ତି । ସେ ଏଠାକୁ ଆସିଥିବା ପରି ଏହା ମଧ୍ୟ ଏକ ସର୍‌ପ୍ରାଇଜ । ଉତ୍ତେଜନାରେ କଲ୍ୟାଣୀ ଅନ୍ତରରେ କମ୍ପନ ସୃଷ୍ଟିହୁଏ । ତା'ର ସ୍ମୃତି ଓ ସ୍ୱପ୍ନର ଅନୁସନ୍ଧାନରେ ସେ ଦୌଡ଼ିଯାଏ, ଦୁଇହାତ ବଢ଼ାଏ, ଦରାଣ୍ଡି ହୁଏ । ମାଟି ବିଦୀର୍ଣ୍ଣ କରି ପୁଳା ପୁଳା ହାହାକାର ଉଠିଆସେ । ସେ ତନ୍ନତନ୍ନ କରି ଖୋଜି ମଧ୍ୟ ତା'ର ଘରଟିକୁ ଦେଖିବାକୁ ପାଏ ନାହିଁ । ତେବେ କ'ଣ ବ୍ରହ୍ମପୁତ୍ର ପରି ଏହା କେଉଁଠାରେ ଅଦୃଶ୍ୟ ହୋଇଯାଇଛି ? କେଉଁଠାରେ ରହିଲା ହରିନାରାୟଣ ରାୟଙ୍କ ଘର ? କଳା ରଙ୍ଗର ଗେଟ୍, ଗେଟ୍‌ର ଉଭୟ ପାର୍ଶ୍ୱରେ ମାଧବୀଲତା, ଘରର ପାଚେରିକୁ ଲାଗି ଆମ୍ବ-ଜାମୁ-ଗୁଆ-ନଡ଼ିଆ ଗଛର ଧାଡ଼ି ?



## = ଚାରି =

ସେ ଶରିଫାଙ୍କ ଘର ଚିହ୍ନିପାରିଲା, ପଲସ୍ତରା ଝଡ଼ି ଯାଇଥିଲେ ମଧ୍ୟ ବାରଣ୍ଡା, ସଦର ଦରଜା, ଖିଡ଼ିକି ଠିକ୍ ପୂର୍ବପରି ରହିଛି । ଭୁଲ ହେବାର କୌଣସି କାରଣ ନାହିଁ । ଦୀପେନର ହାତ ଧରି ସିଧା ସେହି ବାରଣ୍ଡାକୁ କଲ୍ୟାଣୀ ଉଠିଆସିଲା । ଦରଜାର ଜଞ୍ଜିର ହଲାଇଲା, ଜଞ୍ଜିର ହଲାଇବା ସମୟରେ ତା'ର ଅତୀତ ଦିନର ସ୍ମୃତି ମନେପଡ଼ିଲା । ବେଳ ଅବେଳ କିଛି ନମାନି ସେ ଏହିପରି ଜଞ୍ଜିର ହଲାଉଥିଲା । ଶରିଫା ଘରେ ଅପେକ୍ଷା କରି ରହିଥାଏ । ସନ୍ଧ୍ୟା କି ସକାଳ ବାଛବିଚାର ନକରି ସବୁବେଳେ ଶରିଫା ଶରିଫା ଡାକେ । ଶରିଫା ଜାମୁକୋଳି ପଡ଼ିଛି ଆ ଯିବା, ଶରିଫା ସାପଖେଳ ଦେଖିବୁ ଆ, ମାଙ୍କଡ଼ ନାଚ ଦେଖିବୁ ଆ, ଏ ଶରିଫା, ଦଉଡ଼ିବନ୍ଧା କୋର୍ଟ କଟାଯାଇଛି, ଶୀଘ୍ର ଆ । ଶରିଫା ମୁକ୍ତ ପକ୍ଷୀଟିଏ ଭଳି ଉଡ଼ିଆସେ । ଶରିଫାର ମା' ଘରଭିତରୁ ବଡ଼ପାଟିରେ ଡାକି କୁହେ, ଅଳିଆ ଉଠାଇ ଘର ଓଳେଇ ଦେ, ବିଛଣାଟା ଗୋଟାଇ ଦେ, ହେଲେ କିଏ ବା କାହାକଥା ଶୁଣିବାକୁ ଅଛି ? ଅବସର ସମୟରେ ଗୋଟିଏ ବସ୍ତିରୁ ଅନ୍ୟବସ୍ତିକୁ ଦୌଡ଼ି ଦୌଡ଼ି ଚାଲିଯିବା ଥିଲା ଏକ ଦୈନନ୍ଦିନ କାଯ୍ୟ । କାହାଘରୁ କରମଙ୍ଗା ତ କାହାଘରୁ କଇଥ ଆଣି ଅନ୍ୟ କାହାଘରେ ବସି ହସି ହସି ଶେଷ କରିବା ମଧ୍ୟ ଏହି କାର୍ଯ୍ୟପରିସରଭୁକ୍ତ ଥିଲା । କଡ଼ାରେ ହାତ ଦେଇ କଲ୍ୟାଣୀ ଠିଆହୋଇ ରହିଥିଲା, ମନେ ମନେ ଭାବୁଥିଲା ଅତୀତ ଦିନ ଭଳି ଶରିଫା ପକ୍ଷୀଟିଏ ପରି ବର୍ତ୍ତମାନ ମଧ୍ୟ ଦୌଡ଼ି ଆସିବ । କଲ୍ୟାଣୀ ମଧ୍ୟ କହିବ ଚାଲ ଗୁଡ଼ି ଉଡ଼ାଇବାକୁ ଯିବା । ଗୁଡ଼ି ? ବର୍ତ୍ତମାନ କ'ଣ ଗୁଡ଼ି ଉଡ଼ାଇବାର ସମୟ ? ଆକାଶରେ ମେଘଖଣ୍ଡମାନ ଭାସି ବୁଲୁଛନ୍ତି । କେଉଁ ମାସରେ ଗୁଡ଼ି ଉଡ଼ାଇବାକୁ ହୁଏ ? ଶରତ ଋତୁରେ ନା ବସନ୍ତ ଋତୁରେ ?

ଦୀପେନ ଫୁସ୍‌ଫୁସ୍ କରି କହିଲା—ଏହି ଘରଟି ବୋଧେ ତୁମର ଥିଲା ।

—ଆରେ ନା ନା, ଆମଘର ଥିଲା ଏହାର ନିକଟରେ । ଅନେକ ବଡ଼ଘର । ଏହି ବସ୍ତିର ସବୁଠାରୁ ବଡ଼ଘର । ପ୍ରାୟ ସତର ଗୁଣ୍ଠ ଜମି ଉପରେ । କଲିକତାରେ ଏ ଧରଣର ଘର ପ୍ରାୟ ଦେଖିବାକୁ ପାଇବୁ ନାହିଁ ।

—କ'ଣ ଅଶେଷ ଭାଇଙ୍କ ଘରପରି ବଡ଼ ?

—ଦୁର୍, ଅଶେଷଙ୍କ ଘର କେଉଁ ଗୁଣରେ ହେବ ? ଆମଘର ତାହାର ଦଶଗୁଣ ହେବ ।

କଲ୍ୟାଣୀ କଣେଇ ଚାହିଁ ଦେଖିଲା ଘରଟି ନାହିଁ । କେତୋଟି ନୂଆ ବିଲଡ଼ିଂ ଦେଖାଯାଉଛି । ଏପରି କଣେଇ ଚାହିଁ ଦେଖିବାର କାରଣ ହେଲା ସେ ଭୟ ପାଇଯାଇଛି । ଏଇଥିପାଇଁ ତା'ର ଭୟ ହୋଇଛି ଯଦି ସତରେ କୌଣସି କାରଣରୁ ସେ ଘରଟି ନାହିଁ ବୋଲି ଦେଖିବ । କଲ୍ୟାଣୀ ଆଖିକୁ ସବୁକିଛି ଅସ୍ପଷ୍ଟ ଦେଖାଯାଉଛି । ଏତେ ସବୁ ବଦଳି ଯାଇଛି, ଏତେ ବଦଳିବ କାହିଁକି, ମଲାନଇପରି ଅସ୍ଥିକଙ୍କାଳଶୂନ୍ୟ ଘରବାଡ଼ି, ଗଛଗୁଡ଼ିକ ବୋଧହୁଏ ପାଣି ନପାଇ ମରିଯାଇଛି । କଲ୍ୟାଣୀ ଆଖି ପୋଛି ପୁନର୍ବାର ଦେଖେ । ବାରମ୍ବାର ସବୁକିଛି ତାକୁ ଝାପ୍ସା ଦେଖାଯାଏ ।

ସତର ଅଠର ବର୍ଷର ପିଲାଟିଏ ଭିତରୁ କବାଟ ଖୋଲିଦିଏ । ପାଇଜାମା ଓ ସାର୍ଟ ପିନ୍ଧିଥିବା ପତଳା ପିଲାଟିଏ । ପିଲାଟି କିଛି ପଚାରିବା ପୂର୍ବରୁ କଲ୍ୟାଣୀ କହିଲା—ଶରିଫା ଅଛି ?

—ଶରିଫା ?

—ଏ କ'ଣ ଶରିଫାଙ୍କ ଘର ନୁହେଁ ।

—ପିଲାଟି ଉଭୟ ପଟକୁ ମୁଣ୍ଡ ହଲାଇଲା ।

—ବହୁ ପୂର୍ବରୁ ଏହି ଘରେ ଶରିଫା ଥିଲା ନା ? ଶରିଫା, ମୁନ୍ନି ?

—ହଁ ।

ସେଇକଥା କୁହ । ତୁମେ ମୋତେ ତ ଭୟଭୀତ କରି ଦେଇଥିଲ । ଅବଶ୍ୟ ବହୁବର୍ଷ ପୂର୍ବେ, ସେଥିରେ କ'ଣ ଅଛି ? ମୋର ତ ଭୁଲ୍ ହେବାର କଥା ନୁହଁ । ସେହି ଘର, ସେହି ଦରଜା, ଝରକା । ଭୁଲ୍ ହେବ କାହିଁକି ?

ପିଲାଟି ଦୁଆର ଧରି ଛିଡ଼ାହୋଇ ରହିଥିଲା । ସେ କିଛି ବୁଝିବା ପୂର୍ବରୁ କଲ୍ୟାଣୀ କହିଲା—ବର୍ତ୍ତମାନ ଶରିଫା କେଉଁଠି ?

—ନଓମହଲରେ । ପିଲାଟି ନିର୍ଲିପ୍ତ କଣ୍ଠରେ ଉତ୍ତର ଦେଲା ।

—ବର୍ତ୍ତମାନ ଏ ଘରେ କିଏ ରହୁଛି ?

—ଆମ୍ଭେମାନେ । ଶରିଫା ମୋର ପିଉସୀ ହୁଅନ୍ତି ।

—ପିଉସୀ ! ଏହାର ଅର୍ଥ ତୁମେ କ'ଣ ଆନିସ ଭାଇଙ୍କର ପୁଅ ?

—ହଁ ।

—କଲ୍ୟାଣୀ ସ୍ନେହରେ ପିଲାଟିକୁ ପାଖକୁ ଟାଣିଆଣିଲା । ପିଠିରେ ହାତ ବୁଲାଇ ପଚାରିଲା—ତୁମର ନାମ କ'ଣ ବାବା ?

—ଇୟାସିର ।

—ତୁମର ବାପାଙ୍କୁ କୁହ କଲିକତାରୁ କଲ୍ୟାଣୀ ଆସିଛି ।

—ବାପା ଚିଟାଗଙ୍ ଯାଇଛନ୍ତି ।

—ତେବେ ତୁମର ମା' ?

—ମା' ଶୋଇଛନ୍ତି ।

—ଶୋଇଛନ୍ତି ? ଆଚ୍ଛା, ଠିକ୍ ଅଛି, ଶରିଫା ନିକଟକୁ କ'ଣ ଖବର ପଠାଯାଇ ପାରିବ ନାହିଁ ? ଇୟାସିର ଚୁପ୍ ହୋଇ ରୁହେ ।

—ଠିକ୍ ଅଛି, ତୁମେ ମୋତେ ତା' ଘରକୁ ନେଇଯାଇ ପାରିବ ?

—ଏହା ଶୁଣିବା ପରେ ଇୟାସିର କୌଣସି ଉତ୍ତର ଦେଲାନାହିଁ । ସେ ହୁଏତ ଭାବୁଛି କିଏ ନା କିଏ କେଉଁଠାରୁ ଆସିଛି, କହୁଛି ଚାଲ ଯିବା । ସେ ଏତେ ସହଜରେ ଚାଲିଯିବ, ଏହା କ'ଣ ସମ୍ଭବ ?

କଲ୍ୟାଣୀ ହସି ହସି କହିଲା—ତୁମର ମା'ଙ୍କୁ ଡାକ, କୁହ ମୋର ନାମ କଲ୍ୟାଣୀ । ପାଖରେ ଆମର ଘରଥିଲା । ମୋ ବାପାଙ୍କ ନାମ ହରିନାରାୟଣ । ହରିନାରାୟଣ ରାୟ ।

ଇୟାସିର ଏହାପରେ ମୁହଁ ଖୋଲିଲା । କହିଲା—ଭିତରକୁ ଆସି ବସନ୍ତୁ ।

କଲ୍ୟାଣୀ ଦୀପେନଙ୍କୁ ସାଥିରେ ଧରି ଘର ଭିତରକୁ ପଶିଲା । ବର୍ତ୍ତମାନ ଅନ୍ତତଃ ହାତଗୋଡ଼ ଧୋଇବା ଖୁବ୍ ଦରକାର । ଅତ୍ୟଧିକ ଭୋକ ଲାଗୁଛି । ଅପରାହ୍ଣ ଗଡ଼ିଯାଇଛି । ଦୁଇଟି କଦଳୀ ଓ ବିସ୍କୁଟ ଭିନ୍ନ ଅନ୍ୟକିଛି ଦୀପେନ୍ ପେଟରେ ପଡ଼ିନାହିଁ । ତଥାପି ବିଚରା ଭୋକରେ କାତର ହୋଇନାହିଁ । ସଲ୍ଟଲେକ୍ ହୋଇଥିଲେ ଏତେ ସମୟ ପର୍ଯ୍ୟନ୍ତ ଅପେକ୍ଷା ନକରି ଚିତ୍କାର କରି କମ୍ପାଉଥାନ୍ତା । ଆଉ କଲ୍ୟାଣୀର ପ୍ରାୟ ଭୋକନାହିଁ । ମନରେ ତା'ର ଭୋକ, ଆଖିରେ ଭୋକ—ହେଲେ ପେଟରେ ଭୋକନାହିଁ ।

କଲ୍ୟାଣୀ ଆଗ୍ରହାନ୍ୱିତ ହୋଇ ପଚାରେ—ମୁନ୍ନି, ଶାହାନା ଏମାନେ କେଉଁଠାରେ ରହୁଛନ୍ତି ? ଇୟାସିର ଦାନ୍ତରେ ନଖ ଛିଡ଼ାଉ ଚିଡ଼ାଉ କହିଲା—ସାନ ପିଉସୀ ସାଉଦି ଆରବରେ ରହୁଛନ୍ତି ।

—ଆଉ ମୁନ୍ନି ?

—ଢାକାରେ ।

—ଢାକାରେ କେଉଁଠି ?

—ଧାନମଣ୍ଡି ।

—ଧାନମଣ୍ଡି ? ପିଲାବେଳେ ଧାନମଣ୍ଡି ଯାଉଥିଲି । ସେଠାରେ କେଡ଼େ ବଡ଼ ବଡ଼ ପଡ଼ିଆ ଅଛି, ନା ? ବାପା ନେଇଯାଉଥିଲେ । ମୁଁ ସେଠାରେ ଦୌଡୁଥିଲି । ମନେଅଛି ଦିନେ ଦୌଡ଼ିବା ସମୟରେ ବାପା କହିଲେ—ଚାଲ ଘୋଡ଼ାଦୌଡ଼ ଦେଖିବାକୁ ଯିବା । ବାପା ରେସ୍‌କୋର୍ସ ପଡ଼ିଆକୁ ନେଇଗଲେ । ବାପା ସେଠାରେ ମୋତେ ଗୋଟିଏ ଘୋଡ଼ା ପିଠିରେ ଚଢ଼ାଇଥିଲେ । ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ଚିତ୍କାର କରିଥିଲି ।

ଇୟାସିର ଦାନ୍ତରେ ନଖ ଛିଡ଼ାଇବାରେ ଲାଗିଥିଲା । ଦୀପେନ ମାଅଙ୍କ ଆହୁରି ପାଖକୁ ଲାଗିଆସି କହିଲା—ମୁଁ ରେସ୍‌କୋର୍ସକୁ ଯିବି ।

—ଘୋଡ଼ା ପିଠିରେ ଚଢ଼ିବା ପାଇଁ ଭୟ କରିବୁ ନାହିଁ ତ ?

—ବାଃ ! ମୁଁ କ'ଣ ଦିଦି ଯେ ଭୟ କରିବି ? ସେଦିନ ଦେଖିଲ ନାହିଁ ଦିଦିଟା କିପରି ସାଇକେଲ ରାଇଡ଼ିଂରେ ପଛେଇଗଲା । ସେ ତ ଏକ ଭୟାତୁରା । ଚିଡ଼ିଆଖାନାରେ ଦୁଇଥର ହାତୀ ପିଠିରେ ଚଢ଼ିଛି । ଘୋଡ଼ା ପିଠିରେ ଚଢ଼ିପାରିବି ନାହିଁ ବୋଲି ଭାବୁଛ ?

—ଠିକ୍‌ଅଛି, ଦେଖାଯାଉ ପ୍ରଥମେ ଶରିଫା ନିକଟରେ ପହଞ୍ଚିଯାଏ, ତା' ପରେ କେଉଁଠାକୁ କେଉଁଠାକୁ ଯିବାକୁ ହେବ ପ୍ରୋଗ୍ରାମ ସେଟ୍ କରିବା ।

ଇୟାସିର କଲ୍ୟାଣୀ ଆଡ଼କୁ ବଙ୍କେଇକରି ଚାହେଁ । କଲ୍ୟାଣୀ ତାକୁ ପାଖରେ ବସାଇ ପଚାରେ—ଇୟାସିର, ତୁମେ କ'ଣ କେବେହେଲେ ମୋର ନାମ ଶୁଣିନାହଁ ? କେହି କହିନାହାନ୍ତି ? ତୁମର ବାପା କିମ୍ବା ପିଉସୀମାନେ ?

ଇୟାସିର ନାସ୍ତିସୂଚକ ମୁଣ୍ଡହଲାଏ । କଲ୍ୟାଣୀ ହସିହସି କହିଲା—ବାସ୍ତବରେ ତୁମେ ବୋଧେ ଶୁଣିନାହଁ । ଏ ବୟସର ପିଲାମାନେ କ'ଣ ଆଉ ବାପାଙ୍କ ପାଖରେ ବସି

କଥାବାର୍ତ୍ତା କରନ୍ତି । ତୁମେ ବସିଲେ ଶୁଣନ୍ତ ଆମେ, ମାନେ ମୁଁ ଆଉ ଶରିଫା କେତେ ଅମାନିଆ ଥିଲୁ । ଆଚ୍ଛା ଇୟାସିର, ତୁମର ବୟସ କେତେ ହେବ ? ତୁମେ କେଉଁ ମସିହାରେ ଜନ୍ମଲାଭ କରିଛ କୁହ ତ ? ଆନିସ ଭାଇଙ୍କ ବାହାଘର ତ ଆମେ କରିଛୁ । ତୁମର ବାପା ହାତୀ ପିଠିରେ ଚଢ଼ି ବାହା ହେବାକୁ ଯାଇଥିଲେ, ଏ କଥା ଜାଣିଛ ? ଆମେ ଛୋଟପିଲାମାନେ ହାତୀ ପଛରେ ସେ କି ଦୌଡ଼ା ଦୌଡ଼ିଥିଲୁ ! ସାଥିରେ ବ୍ୟାଣ୍ଡପାର୍ଟି ଥିଲା । ବିଗୁଲରେ ଗୀତର ସ୍ୱର ଝଙ୍କାର ତୋଳି ବାଜୁଥିଲା । ଗୋଲପୁକୁର ତଟରେ ବାହାଘର ହୋଇଥିଲା । ନୂଆବୋହୂକୁ ସ୍ୱାଗତ ଜଣାଇବା ପାଇଁ ଏହି ଯେଉଁ ଦୁଆର, ସେହିଠାରେ ଆମେସବୁ ଛିଡ଼ାହୋଇ ରହିଥିଲୁ । ବୋହୂ ଲାଲ୍ ବନାରସୀ ଶାଢ଼ି ପିନ୍ଧି ଆସିଥିଲା । ଏସବୁ କାଲିର ଘଟଣାପରି ମନେହୁଏ । ଶରିଫା ଆଉ ମୁଁ ସେଦିନ ରାତିସାରା ଛାତଉପରେ ବସି ଗପ କରିଥିଲୁ । ନୂଆବୋହୂଙ୍କୁ ଆମେ କେଉଁ କେଉଁ ଗୀତ ଶୁଣାଇବୁ ସେହି କଥାନେଇ ଆମର ଉଦ୍‌ବେଗର ସୀମା ନଥିଲା । ବୋହୂର ନାକ ଉପରେ ଏକ କଳାଜାଇ ଥିଲା । ତୁମ ମା'ଙ୍କ ନାକ ଉପରେ ଏକ କଳାଜାଇ ଚିହ୍ନ ଅଛି ନା ଇଆସିର...ଅନିଲକକା, ସୌମେନ, ରୁଖସାନା, ସେଲିମ ଏମାନେ କିପରି ଅଛନ୍ତି ଇୟାସିର ?

ଜାଣେ ନାହିଁ ।

ଶରିଫା, ମୁନ୍ନି, ଶାହାନା ଏମାନେ କିପରି ଅଛନ୍ତି, କାହା ସହିତ ବାହାଘର ହେଲା, ପୁଅ ଝିଅମାନେ କ'ଣ କରୁଛନ୍ତି, କ'ଣ ପଢ଼ନ୍ତି, ଏହିସବୁ ପ୍ରଶ୍ନର ଉତ୍ତର ଦେବାକୁ ଇୟାସିର ଉଦାସୀନ ଭାବ ପ୍ରକାଶ କଲା । ଆନିସର ସ୍ତ୍ରୀକୁ ଡାକି ଯଦି ଗପ କରାଯାଇ ପାରନ୍ତା, ଅନ୍ତତଃ ସେ ଶରିଫାଙ୍କ ଖବର ରଖିଥିବେ । ଭ୍ରାତୃଦ୍ୱିତୀୟା ପର୍ବରେ ପରିମଳ ଆଉ ଜ୍ୟୋତିପ୍ରକାଶଙ୍କ ପରି ଆନିସଙ୍କ କପାଳରେ କଲ୍ୟାଣୀ ମଧ୍ୟ ଚନ୍ଦନ ଟୋପା ଦେଉଥିଲା । ସରଳାବାଳା କହୁଥିଲେ—ଏକା ମା' ପେଟର ଭାଇ କ'ଣ କେବଳ ଭାଇ, କେତେ ପରଲୋକଙ୍କୁ ଆପଣାର ହେବାରେ ଦେଖିଲି, କେତେ ଆପଣାଙ୍କୁ ପର ।

ପାଖରେ ଥିବା ଏହି ଭିଟାମାଟି ଖଣ୍ଡିକରେ ହରିନାରାୟଣ ରାୟଙ୍କ ଘର ଥିଲା । ରାୟବାବୁ ଖୁବ୍ ନାମକରା ଲୋକଥିଲେ । ଗୋଟିଏ ନାଁରେ ତାଙ୍କୁ ସଭିଏଁ ଚିହ୍ନୁ ଥିଲେ । କାଳିବାଡ଼ିର ପେଡ଼ା ଦୋକାନରୁ ପ୍ରତ୍ୟେକ ଦିନ ସକାଳ ସମୟରେ ଏକସେର ଓଜନର ପେଡ଼ା ଘରକୁ ଆସୁଥିଲା । ଇସଲାମପୁରଠାରୁ ପ୍ରତ୍ୟେକ ସପ୍ତାହରେ ଜଗତ ଘୋଷାଲ ଦେଢ଼ସେର ଓଜନର ଘିଅ ପଠାଉଥିଲା । ମୋହନଗଞ୍ଜରୁ କଳାଜିରା ଧାନର ଚାଉଳ

ଆସୁଥିଲା । ଆଉ ମିଠା ପୋଖରୀର ମାଛ ତ ବର୍ଷସାରା ନାଗୁଆ ହୋଇଥିଲା । ନିଜର ପୁଅ ଝିଅଙ୍କୁ ବିଦେଶକୁ ପଠାଇବା ସତ୍ତ୍ୱେ ସେ ନଯାଇ କାହିଁକି ରହିଯାଇଥିଲେ ? ତାଙ୍କର ଅସୁସ୍ଥତା କ'ଣ ନଯିବାର ଏକମାତ୍ର କାରଣ ? କଲ୍ୟାଣୀ ଅନୁମାନ କରେ ବାସ୍ତବରେ ହରିନାରାୟଣ ସ୍ୱଦେଶର ମାୟାବନ୍ଧନ ତୁଟାଇ ପାରୁ ନଥିଲେ । ପୁଅ, ଝିଅ, ଆତ୍ମୀୟସ୍ୱଜନ ସମସ୍ତଙ୍କ ଅପେକ୍ଷା ତାଙ୍କ ନିକଟରେ ଦେଶ ବଡ଼ ହୋଇ ଛିଡ଼ା ହୋଇଥିଲା । ଦେଶର ମାଟି ତାଙ୍କୁ ଯେପରି ଟାଣି ଧରୁଥିଲା । ସତେ ଯେପରି ଦେଶର ମାଟି ତାଙ୍କୁ ହିଁ ଚିହ୍ନିଥିଲା । ଆଉ ସେହି ମାଟିତଳେ ଅଦୃଶ୍ୟରେ ରହିଯାଇଥିଲା ଏକ ଶକ୍ତ ଚେର । ନିଜ ବାପା-ମା'ଙ୍କ ମୃତ୍ୟୁରେ ସେ ଯେ ନିକଟରେ ରହିପାରିନଥିଲା, ତା' ପରି ହତଭାଗିନୀ ଆଉ କିଏ ଅଛି ! କଲ୍ୟାଣୀ ଏହିକଥା ଚିନ୍ତାକରି ଅନ୍ତରର ବେଦନା ଗୋପନ ରଖି ଦୀର୍ଘଶ୍ୱାସ ତ୍ୟାଗକରେ । ଇୟାସିର ଘର ଭିତରକୁ ଚାଲିଯାଏ, ସମ୍ଭବତଃ ତାର ମା'ଙ୍କୁ ଡାକିଆଣିବା ଉଦ୍ଦେଶ୍ୟରେ । ଅନେକ ସମୟ ଅପେକ୍ଷା କରିବା ପରେ ଆନିସଙ୍କ ସ୍ତ୍ରୀର ପାଦଶବ୍ଦ ସେ ଶୁଣିବାକୁ ପାଏନାହିଁ । ତାଙ୍କ ଶଶୁରଘର ପାଖଘରେ କେବେ କେଉଁ କଲ୍ୟାଣୀ ରହୁଥିଲା—ସେଥିସକାଶେ ତାଙ୍କର କୌଣସି ଆଗ୍ରହ ରହିବାର କଥା ନୁହଁ । ଅସ୍ଥିର ମନରେ କଲ୍ୟାଣୀ ବାରଣ୍ଡାରେ ପଦଚାରଣା କରୁଥିଲା । ସୂତାକୁ ଟାଣକରି ଧରିଲେ ଗୁଡ଼ି ଯେପରି ଧକ୍‌କା ଖାଇ ଖାଇ ପବନରେ ନଟେଇ ଦିଗକୁ ଯାଏ, କଲ୍ୟାଣୀ ଠିକ୍ ସେହିପରି ଚୌକାଠ, ଶିଡ଼ିକୁ ଝୁଣ୍ଟି ଝୁଣ୍ଟି ପାଖ ଦଲାଣ ଦିଗକୁ ଅଗ୍ରସର ହେଉଥିଲା । ହଳଦୀ ରଙ୍ଗର ଏହି ସମସ୍ତ ଘର ତା' ସ୍ମୃତିର କୌଣସି ଚିହ୍ନ ବହନ କରିନାହିଁ । ଦଲାଣଗୁଡ଼ିକର କଡ଼କୁ ଲାଗି ଯେଉଁ ତୃଣାଚ୍ଛାଦିତ ଭୂମି, ସେହି ଭୂମି ଉପରକୁ ଓହ୍ଲାଇଯାଇ ଛିଡ଼ାହେଲେ ପବନରେ କଅଁଳ ଲେମ୍ବୁପତ୍ର ଓ ବାତାପି ଫୁଲର ବାସ୍ନା ସେ ଆଘ୍ରାଣ କରେ । ରୋଷେଇ ଘର ପଛରେ କାଗଜିଲେମ୍ବୁର ଗଛଟିଏ ଥିଲା । ସରଳାବାଳା ଲେମ୍ବୁରସ ଦେଇ ଛୋଟମାଛ ରାନ୍ଧୁଥିଲେ । ଜ୍ୟୋତିପ୍ରକାଶ ହସ ଚାପିରଖି କହୁଥିଲା—ମା, ଯାହା ଜଣାପଡୁଛି ମାଛ ବୋଧେ ଟିକିଏ ଦବିଯାଇଥିଲା । ସରଳାବାଳା କହୁଥିଲେ—ଆରେ ନା, ମାଛ ବାଛିବା ସମୟରେ ସେଗୁଡ଼ିକ ଛଟପଟ ହେଉଥିଲେ, ପୂରାପୂରି ତଟକା ମାଛ । ମାଛ ଖରାପଥିବା କଥାଟା ଲୁଚାଇବାକୁ ଯାଇ ଦୋଷ ନିଜ ଉପରକୁ ଟାଣିନେଇ କହୁଥିଲେ—'ରନ୍ଧା ବୋଧହୁଏ ଭଲ ହୋଇନାହିଁ । ହଳଦୀର ପରିମାଣ ଅଧିକ ହୋଇଯାଇଛି ।' ସକାଳର ସୂର୍ଯ୍ୟକିରଣ ଶିଡ଼ି ଉପରେ ପଡ଼େ । ସରଳାବାଳା ପୁଅ ଝିଅଙ୍କ ଦେହରେ ଚାଦର ଢାଙ୍କିଦେଇ ବେକ ପଛରେ ଗଣ୍ଠିପକେଇ ଦିଅନ୍ତି । ସେହି ଚାଦର ଘୋଡ଼ିହୋଇ ଛୋଟ ଟୁଲ୍ ଉପରେ ବସି ସେମାନେ ଶୀତଦିନ ସକାଳେ ଖରା ପୋହୁଁଥିବା

ସମୟରେ ସରଳାବାଳା ଗରମ ବାମ୍ଫ ଉଠୁଥିବା ଚା' ଓ ମୁଢ଼ି ଦିଅନ୍ତି । ଜ୍ୟୋତିପ୍ରକାଶଙ୍କ ମୁହଁରୁ କେବେ କେବେ ଭୂତଗଳ୍ପ ତ କେବେ କେମିତି ନିଉଟନ, ଆଇନଷ୍ଟାଇନଙ୍କ ଗପ ଶୁଣିବା ସମୟରେ ଚା'ରେ ମୁଢ଼ି ଭିଜାଇ କଲ୍ୟାଣୀ ଓ ଅନ୍ୟମାନେ ଚାମଚରେ ତାହା ଖାଉଥିଲେ । ରୋଷେଇ ଘରଟି ନାହିଁ । ଖରା ପଡୁଥିବା ଶିଡ଼ିଟି ମଧ୍ୟ ନାହିଁ । ମନେଅଛି ସେଇ ଶିଡ଼ିରୁ ଖରା ନଇଁଗଲେ କଲ୍ୟାଣୀ ସ୍କୁଲକୁ ଯିବା ପାଇଁ ପ୍ରସ୍ତୁତ ହୁଏ । ଅଗଣାରେ ଏକ ଉଚ୍ଚା ତୁଳସୀ ଚଉରା ଥିଲା । ଚଉରା ଆଗରେ ଧଳାଶାଢ଼ି ପିନ୍ଧି ସନ୍ଧ୍ୟାଦୀପ ଜାଳି ନଇଁପଡ଼ି ସରଳାବାଳା ପ୍ରଣାମ ଜଣାଉଥିଲେ, ହୁଳହୁଳି ଦେଉଥିଲେ । ତୁଳସୀ ଚଉରାଟି ଆଉ ନାହିଁ । କଲ୍ୟାଣୀର ଇଚ୍ଛାହୁଏ ସେହି ତୁଳସୀ ଚଉରାର ବେଦୀଟିକୁ ଖୋଳି ଦେଖିବାପାଇଁ—ଯଦି ସେଠାରୁ କିଛି ହଜିଲାଦିନର ସ୍ମୃତି ମିଳେ ! ହରିନାରାୟଣ ରାୟଙ୍କ ଜଣେ ପିଉସୀପୁଅ ଭାଇ ଅଖିଳଚନ୍ଦ୍ର ସରକାର ବ୍ରାହ୍ମଣବାଡ଼ିଆଠାରେ ହୋମିଓପ୍ୟାଥି ପ୍ରାକ୍ଟିସ୍ କରୁଥିଲେ । ସେ କାର୍ତ୍ତିକମାସ ମଧ୍ୟାହ୍ନରେ ପୋଖରୀର ପଶ୍ଚିମ ଦିଗରେ ଗୋଟିଏ ତାଳଗଛ ଲଗାଇଥିଲେ । ଏହି ଗଛଟି କଲ୍ୟାଣୀ ଓ ତା'ର ସାଥୀମାନଙ୍କର ଲୁଚକାଳି, ଚୋରପୁଲିସ ଓ ବୋହୂଚୋରି ଖେଳର ଏକ ଆଡ଼ାସ୍ଥଳ ଥିଲା । ଜ୍ୟେଷ୍ଠମାସର ଝାଞ୍ଜିଖରା ଅପରାହ୍‌ଣରେ ଏହି ଗଛମୂଳରେ ବସି ଲୁଣଲଙ୍କା ବୋଳି ତେନ୍ତୁଳି ଖାଇ ସେମାନେ ଟାକରା ଫୁଟାଉଥିଲେ । ଏସବୁ ସରଳାବାଳାଙ୍କୁ ଲୁଚାଇ ଖାଇବାକୁ ହେଉଥିଲା । ସେ ଦେଖିଲେ କହୁଥିଲେ ତେନ୍ତୁଳି ଫିଙ୍ଗିଦିଅ । ତେନ୍ତୁଳି ଖାଇଲେ ଦେହରେ ଥିବା ରକ୍ତ ପାଣି ହୋଇଯାଏ । ମଝିରେ ମଝିରେ ଗଛରୁ ତାଳ ପଡ଼େ । ଏହି ତାଳକୁ ଗୋଟାଇ ନେଇ ମା'ଙ୍କୁ ଦେବାର ଅର୍ଥ ମାଆ ସେହି ତାଳକୁ ଭାଙ୍ଗି ସେଥିରୁ ଶସତକ କାଢ଼ି ଗାମୁଛାରେ ବାନ୍ଧି ରୋଷେଇ ଘର ବାରାଣ୍ଡାରେ ଝୁଲାଇ ଦେବେ । ସେଥିରୁ ଟପଟପ କରି ରସ ଝରି ଏକ କୁଣ୍ଡରେ ସଂଗୃହୀତ ହେବ । ସେହି ରସକୁ ଫୁଟାଇ ମା' ପିଠା ତିଆରି କରନ୍ତି । ବର୍ତ୍ତମାନ ମଧ୍ୟ ତାହାର ସ୍ୱାଦ ଜିଭରେ ଲାଗିରହିଛି । କଲ୍ୟାଣୀ କେବେ କଲିକତାରେ ସେପରି ତାଳପିଠା ଖାଇଛି ବୋଲି ମନେପକାଇ ପାରୁନାହିଁ । ଗୁଆ ଗଛଗୁଡ଼ିକ ମଧ୍ୟ ନାହିଁ । ଅତୀତରେ ଗୁଆଗଛରୁ ବାହୁଙ୍ଗା ଖସିଲେ ଏକପ୍ରକାର ମଜା ହେଉଥିଲା । ବାହୁଙ୍ଗାର ଖୋଳ ଉପରେ କଲ୍ୟାଣୀ ବସୁଥିଲା, ଆଉ ପରିମଳ ପତ୍ରଧରି ଟାଣି ଟାଣି ପଡ଼ିଆସାରା ବୁଲାଉଥିଲା । କେତେବେଳେ କେମିତି ପରିମଳ ବସୁଥିଲା ଓ କଲ୍ୟାଣୀ ଟାଣି ଟାଣି ବୁଲାଉଥିଲା । ଖୋଳପାଟି ମାଟିରେ ଘଷିହୋଇ ନଛିଡ଼ିବା ପର୍ଯ୍ୟନ୍ତ ଖେଳ ଅବ୍ୟାହତ ରହୁଥିଲା । ଆହା କ'ଣ ସେହି ଗୁଆ ବାହୁଙ୍ଗା ଖୋଳପାର ଦାଗ ମାଟି ଉପରେ ନାହିଁ ! କଲ୍ୟାଣୀ ସବୁଜ ଘାସର ଫାଙ୍କରେ ସେଇ ଖୋଳପାର ଦାଗ ମାଟିରେ ଖୋଜିବାକୁ

ଲାଗେ । ଏହି ମାଟି ଉପରେ ବର୍ଷାପାଣି ପଡ଼ିଲେ ଚନ୍ଦନର ବାସ୍ନା ବାହାରେ, ଶ୍ୱାସ ଖୁବ୍ ଦୀର୍ଘକରି ଟାଣିଲେ ଏବେ ମଧ୍ୟ ସେ ସେହି ମହକ ପାଏ । କଲ୍ୟାଣୀ ଜଳସିକ୍ତ ମାଟି ମୁଠାଏ ହାତରେ ତୋଳିଆଣେ । ପୂର୍ବରୁ ଏହିପରି ମାଟିନେଇ ସେ ରନ୍ଧାଘରେ ଚୁଲି ତିଆରି କରୁଥିଲା । ସ୍କୁଲରେ ଡ୍ରଇଂ ଶିକ୍ଷକ ଆମ୍ବ, ପଣସ ତିଆରି କରିବାକୁ ଦେଉଥିଲେ, ମାଟି ଶୁଖାଇ ତାହା ଉପରେ ରଙ୍ଗ ଦେବାକୁ ହୁଏ । ସ୍କୁଲରୁ ଫେରି କଲ୍ୟାଣୀ ଦୌଡ଼ି ଦୌଡ଼ି ପୋଖରୀ ଆଡ଼କୁ ଯାଏ । ପୋଖରୀ କୂଳରୁ ଓଦାଳିଆ ମାଟି ଆଣି କଣ୍ଢେଇ ତିଆରି କରେ, ଅଷ୍ଟମୀ ସ୍ନାନଦିନ ମେଳାରୁ ଯେଉଁପରି କଣ୍ଢେଇ କିଣିବାକୁ ମିଳିଥାଏ ସେହିପରି କଣ୍ଢେଇ । ଆମ୍ବ, ପଣସ, ଅମୃତଭଣ୍ଡା ତିଆରି କରି ଖରାରେ ଶୁଖାଇଦିଏ । ବର୍ତ୍ତମାନ ପୋଖରୀ କୂଳରେ ସେହିପରି ଅଠାଳିଆ ଓଦାମାଟି ନାହିଁ । କଲ୍ୟାଣୀ ତୋଳିଥିବା ମାଟିଟିକୁ ତାର ହାତଚକିରେ ଚାପି ଚାପି ପରୀକ୍ଷା କରିବାରୁ ତାହା ତାକୁ କମଳାଲେମ୍ବୁ ପରି ବୋଧହୁଏ । ସ୍କୁଲର ଭୂଗୋଳ ଶିକ୍ଷକ ପଢ଼ାଉଥିଲେ ପୃଥିବୀ ହେଉଛି ଗୋଲ, ଉପର ତଳ ସାମାନ୍ୟ କମଳାଲେମ୍ବୁ ପରି ଚେପ୍‌ଟା । ହାତରେ ଥିବା ସେହି ଗୋଲ ମାଟିଟିକୁ ଚାହିଁଥିବା ସମୟରେ ଭୂଗୋଳ ଶିକ୍ଷକ ଶ୍ରୀ ପ୍ରଦୀପକୁମାର ବିଶ୍ୱାସଙ୍କ ମୁହଁଟି ତା'ର ମନେପଡ଼ିଯାଏ । ସାର୍ କ'ଣ ବଞ୍ଚିଛନ୍ତି ? ଯଦି ଥରଟିଏ ମାତ୍ର ତାଙ୍କ ପାଦଧୂଳି ନେଇ ହୁଅନ୍ତା !

ଟୁକରୋ ପଡ଼ିଆରେ ଛିଡ଼ାହୋଇ ମନେପଡ଼େ ଏହି ପଡ଼ିଆରେ ଦଳବାନ୍ଧି ବନ୍ଦୀ ବନ୍ଦୀ, ଚୋରପୁଲିସ, ଦଉଡ଼ିବନ୍ଧା, ଗୋଲାପ ପଦ୍ମ ଆଦି ଖେଳ ସେମାନେ ଖେଳୁଥିଲେ । ଦୁଇଜଣ ହାତ ଉପରକୁ ଉଠାଇ ଧରିଥିବା ସମୟରେ ଅନ୍ୟମାନେ ଧାଡ଼ିବାନ୍ଧି ହାତ ତଳେ ଯାଆନ୍ତି ଏବଂ ହାତ ଉଚ୍ଚ କରିଥିବା ପିଲାମାନେ ସ୍ୱରରେ ଗାଉଥିଲେ—ଅପନେଟୋ ବାଇସ୍କୋପ୍ ନାଇନଟେନ ତେଇସ୍କୋପ, ଚୁଲଟାନା ବିବିୟାନା ସାହେବ ବାବୁର ବୈଠକଖାନା...ମନେହୁଏ ଏକ୍‌କାଦୋକ୍‌କା ଖେଳର ଷୋହଳଟିଯାକ ଚିହ୍ନ ଖୋଜିଲେ ଏବେ ମଧ୍ୟ ମିଳିଯିବ । ପବନରେ ଏବେ ମଧ୍ୟ ଶରୀରର ସେହି ବାସ୍ନା ଅନୁଭୂତ ହେବ । ପୋଖରୀ ନାହିଁ, ପୋଖରୀ ହୁଡ଼ାରେ ଗୋଟିଏ କାଠଚମ୍ପାର ଗଛ ଥିଲା, ଆକାଶର ତରାଭଳି ଧଳା ଧଳା ଫୁଲ ଫୁଟୁଥିଲା—ନାହିଁ, ଘର ପଛରେ ଥିବା ବାଉଁଶବଣ, ବାଉଁଶ ବଣର ଉତ୍ତର ଦିଗରେ ଥିବା ଦୁଇଟି ଗୋପାଳଭୋଗ ଓ ଚାରିଗୋଟି ଫଜିଲ ଆମ୍ବର ଗଛ ନାହିଁ । ପିଜୁଳି, ଆତ, କରମଙ୍ଗା କୌଣସିଟି ହେଲେ ନାହିଁ । ଗୋଟିଏ ଖଜୁରି ଗଛ ଥିଲା, ଶୀତଦିନେ ଗଛ କଟାଯାଇ ଏକ ମାଟି ତିଆରି କଳସୀ ବାନ୍ଧି ରଖା ହେଉଥିଲା,

ଭୋରର ଘନ କୁହୁଡ଼ି ମଧ୍ୟରେ ଶୀତରେ ଥୁରୁଥୁରୁ କମ୍ପୁଥିବା ସମୟରେ କଲ୍ୟାଣୀ ଓ ତା' ସାଥୀମାନେ ରସକଳସୀ ଓହ୍ଲାହେବାର ଦୃଶ୍ୟ ଦେଖୁଥିଲେ, କଥା କହିଲେ ମୁହଁରୁ ଧଳା ଧଳା ଧୂଆଁ ବାହାରୁଥିଲା । ପଡ଼ିଆରେ ଗୋଟିଏ ଗଙ୍ଗଶିଉଳି ଫୁଲଗଛ ଥିଲା, ସମସ୍ତେ ମିଳି ଶୀତ ସକାଳରେ ଫୁଲ ଗୋଟାଇ ତହିଁରେ ମାଳା ତିଆରି କରୁଥିଲେ । ସରଳାବାଳା ଶିଉଳି ଫୁଲର ନାରଙ୍ଗୀ ବୃନ୍ତକୁ ଖରାରେ ଶୁଖାଇ ରଙ୍ଗ ପ୍ରସ୍ତୁତ କରୁଥିଲେ । ପଲାଉରେ ଜାଫରାନ ପରି ସିଞ୍ଚି ଦେଉଥିଲେ । କାମିନୀ ଫୁଲର ଗଛଟି ମଧ୍ୟ ନାହିଁ, ରାତିରେ କାମିନୀ ଫୁଲର ମହମହ ବାସ୍ନାରେ ଘରଟି ମହକି ଉଠେ । ସରଳାବାଳା ଗଭୀର ରାତିରେ ଦରଜାରେ ଆଘାତ କରି କହୁଥିଲେ—ଏ କଲ୍ୟାଣୀ, ଝରକା ବନ୍ଦ କରିଦେ, ଫୁଲର ବାସ୍ନାରେ ସାପ ଆସନ୍ତି ।

କିଛି ନାହିଁ । ଘର ନାହିଁ । ଗଛ ନାହିଁ । ସମ୍ମୁଖ ପଡ଼ିଆରେ କେବଳ ଜାମୁଗଛଟି ଛିଡ଼ାହୋଇ ରହିଛି । ନିଃସଙ୍ଗ ଏକାକୀ ଜାମୁଗଛ । କଲ୍ୟାଣୀ ତା'ର ପୂର୍ବପୁରୁଷଙ୍କ ଭିଟାମାଟି ଉପରେ ଛିଡ଼ାହୋଇ ନିଜେ ମଧ୍ୟ ଖୁବ୍ ଏକା ଏକା ମନେକରେ । ଖୁବ୍ ନିଃସଙ୍ଗ ।



## = ପାଞ୍ଚ =

ଇୟାସିର ଖଣ୍ଡିଏ ରିକ୍ସାକରି କଲ୍ୟାଣୀ ଓ ଦୀପେନଙ୍କୁ ନଓମହଲରେ ପହଞ୍ଚାଇ ଦିଏ । ଏହି ଘରେ ଶରିଫା ବାସକରେ—ସେହି ଶରିଫା—ଲମ୍ବାଳିଆ ମୁହଁ, ଆଖି ଦୁଇଟି ବଡ଼ ବଡ଼, କୁଞ୍ଚୁକୁଞ୍ଚିଆ ବାଳରେ ପରିପୂର୍ଣ୍ଣ ମୁଣ୍ଡ । ଶରିଫା ତାକୁ ଚିଠିରେ ଲେଖୁଥିଲା—'ଏଠାରେ ମୋତେ କିଛିହେଲେ ଭଲ ଲାଗୁନାହିଁ କଲ୍ୟାଣୀ । ଏଠାରେ ମୋର ଜଣେ ହେଲେ ବନ୍ଧୁ ନାହାନ୍ତି । ତୁ ଚାଲିଆ । ମୁଁ ଯଦି ଇଣ୍ଡିଆ ଯିବାର ରାସ୍ତାଟା ଜାଣିଥାନ୍ତି ତେବେ ତୋ ନିକଟକୁ ଚାଲିଯାଆନ୍ତି । ବୋଧହୁଏ ତୋର ନୂଆ ନୂଆ ବନ୍ଧୁ ହୋଇଛନ୍ତି । ତୋ ବ୍ୟତୀତ ମୋର କେହି ବନ୍ଧୁ ନାହିଁ । ଆମମାନଙ୍କର ଖେଳ ଆଉ ଜମୁନାହିଁ । ତୋତେ ଛାଡ଼ି ଖେଳିଯିବାକୁ ଭଲ ଲାଗେ ନାହିଁ । ଅମ୍ମା କହୁଛନ୍ତି ବଡ଼ ହୋଇଯାଇଛୁ, ବର୍ତ୍ତମାନ ଘରେ ବସି ରନ୍ଧାବଢ଼ା କର, ସିଲେଇ କର, ଖେଳକୁଦ ଛାଡ଼ିଦେ । ତୋର ଅନୁପସ୍ଥିତିରେ ମୋର ସବୁକିଛି ଭିନ୍ନ ଧରଣର ହୋଇଯାଇଛି । ମୁଁ ଆଉ ଗୀତଗାଇ ପାରୁନାହିଁ । ତୁମ ଘରେ ଆମେ ଦୁଇଜଣ ନାଚି ନାଚି ଗାଉଥିଲେ—'ଛନ୍ଦେ ଛନ୍ଦେ ଝୁଲି ଆନନ୍ଦେ ଆମେ ବନଫୁଲ ଗୋ'—ଏହି ଗୀତଟି କେଉଁଠି ଶୁଣିଲେ ମୋତେ କାନ୍ଦଲାଗେ । ତୋ ସହିତ କେବେ ଦେଖାହେବ କହତ ! ତୋ ମାମୁ ଯଦି ତୋତେ ଘେନି ନ ଆସନ୍ତି ତେବେ ତୁ ଏକା ଏକା ଚାଲିଆ । ତୁ ପରା ଥରେ ଏକା ଏକା ନଦୀର ଅପର କୂଳକୁ ଚାଲିଯାଇଥିଲୁ, ତେବେ ତୋର ଆଉ କାହାକୁ ଭୟ ! ରାତିର ଅନ୍ତିମ ପ୍ରହରରେ ଥରେ ଏକା ଏକା ଶ୍ମଶାନ ଘାଟକୁ ଯାଇଥିଲୁ । ଶାନ୍ତି ସୁନୀତିଙ୍କ ସହିତ ତୋର ଆଉ ମିଶିବାର ଦରକାର ନାହିଁ । ପରିମଳକୁ କହିବୁ ମିଶିବ ନାହିଁ । ଅହଙ୍କାରୀ ଝିଅମାନଙ୍କୁ ମୁଁ ବି' ଆଖିରେ ଦେଖିବା ପାଇଁ ଇଚ୍ଛା କରେ ନାହିଁ ।'

କଲ୍ୟାଣୀ ମଧ୍ୟ ସମସ୍ତ କଥା ଜଣାଇ ଲେଖେ । ଗୋବରାରେ ଥିବା ବଡ଼ ପୁଷ୍କରିଣୀ, ଟ୍ରାମଲାଇନ, ବସ୍‌ଚଢ଼ା, ବ୍ରେବୋର୍ଣ୍ଣ କଲେଜର ବନ୍ଧୁହୀନ ଦିନ, କିଛିହେଲେ ଭଲ ନ ଲାଗିବା, ବାପାଙ୍କ ଉପରେ ଅଭିମାନ, ଜ୍ୟୋତିଭାଇର ନିରୁଦ୍ଦିଷ୍ଟ ହେବା, ବ୍ରହ୍ମପୁତ୍ର,

କାମିନୀ ଗଛରେ ଫୁଲ ଫୁଟୁଛି କି ନାହିଁ—ଏହିପରି ସମସ୍ତ କଥା ଲେଖି ଛଅ ସାତ ପୃଷ୍ଠା ଭରିଦିଏ ।

ସେହି ଶରିଫାକୁ ଏତେ ବର୍ଷ ପରେ ସେ ଦେଖିବ—ଛାତି କିପରି ଧଡ଼ପଡ଼ କରି ଉଠେ, ଯେପରି ବର୍ତ୍ତମାନ ସେ ସତର ବର୍ଷର ବୟସଟିକୁ ତା' ହାତମୁଠାରେ ପାଇଯିବ । ସେ ଯେପରି ଏକ ବନ୍ଧକୀ କାହା ନିକଟରେ ରଖି ଯାଇଥିଲା । ବର୍ତ୍ତମାନ ସେ ତାହା ଫେରାଇ ନେବାକୁ ଆସିଛି । କଲ୍ୟାଣୀ ଚାଲଯିବା ଦିନ ଶରିଫା ଧୂଳିରେ ଗଡ଼ି କାନ୍ଦିଥିଲା । ଫେରିଆସିବାର କଥାଥିଲା । ସେ ଫେରିଆସିଲା, ହେଲେ ଆଶାତୀତ ଭାବରେ ବିଳମ୍ବ ହୋଇଯାଇଥିଲା ।

ବସିଥିବା ଘରେ ଓଜନିଆ କାଠରେ ନିର୍ମିତ ସୋଫା ପଡ଼ି ରହିଥିଲା । କାଠର ଏକ ସେଲଫରେ କାଚନିର୍ମିତ ବାସନପତ୍ରଗୁଡ଼ିକ ସଜାହୋଇ ରଖାଯାଇଥିଲା । ଦୁଇଟି ଛ-ସାତ ବର୍ଷର ଝିଅ ଦୁଆରରେ ଉଙ୍କିମାରି ଫେରିଗଲେ । କାନ୍ଥରେ ମଖମଲ କନାରେ ବନ୍ଧାଇ କରାଯାଇଥିବା ଗୋଟିଏ କାବାଶରିଫଙ୍କ ଫଟୋଚିତ୍ର ଝୁଲୁଛି । ଇୟାସିର ଶରିଫାକୁ ଡାକିବା ପାଇଁ ଭିତରକୁ ଯାଇଛି । କଲ୍ୟାଣୀ କାହିଁକି ଶରିଫାର ବୈଠକଖାନାରେ ଅତିଥିଙ୍କ ପରି ବସିରହିବ ! ଭିତରକୁ ପଶିଯାଇ ତାକୁ ଜଡ଼ାଇ ଧରିବା ତା'ର ଉଚିତ । ଦୀର୍ଘଦିନ ଧରି ତା' ସହିତ ସାକ୍ଷାତ ହୋଇନଥିବା ଜନିତ ଶୋକ କ'ଣ ଏତେ ସହଜରେ କଟିଯିବ । ଏହି ସମସ୍ତ କଥା ଚିନ୍ତାକରି କଲ୍ୟାଣୀ ଘର ଭିତରକୁ ପ୍ରବେଶ କରିବାକୁ ଗଲାବେଳେ ଜଣେ ସ୍ଥୂଳ ଶରୀରର ଭଦ୍ରମହିଳା କୁଞ୍ଚିତ ଦୃଷ୍ଟିରେ ଚାହିଁ ତା' ସମ୍ମୁଖରେ ଆସି ପହଞ୍ଚିଲେ । କଲ୍ୟାଣୀ ଚିହ୍ନିବାକୁ ଚେଷ୍ଟାକଲା ସେ ଶରିଫା କି ନୁହେଁ; ଗୌରବର୍ଣ୍ଣର ଲମ୍ବ ମୁହଁ, ବଡ଼ ବଡ଼ ଆଖି ତା'ର ଅଛି କି ନାହିଁ, କୁଞ୍ଚିତ କେଶରାଶିକୁ ଜଟକରି 'ଛନ୍ଦେ ଛନ୍ଦେ ଝୁଲି ଆନନ୍ଦେ' ଗାଇ ନାଚି ଉଠୁଥିବା ସେହି କିଶୋରୀ କି ନୁହେଁ । ଆଖି ଦୁଇଟା ଚିହ୍ନାପଡ଼େ—ସେହି ଆଖି, ସେହି ବିଷଣ୍ଣ ସୁନ୍ଦର ଆଖି, ଆଉ ଚିବୁକ ନିକଟରେ କଳା ତିଳଚିହ୍ନ—ଇଏତ ଶରିଫା, ତା'ର ବାଲ୍ୟବନ୍ଧୁ ଶରିଫା, ଆନନ୍ଦରେ ବିହ୍ୱଳ ହୋଇ ଦୁଇ ହାତମେଲାଇ ତାକୁ ଧରିବା ପାଇଁ କଲ୍ୟାଣୀ ଦୌଡ଼ିଯାଏ—ହେଲେ ଶରିଫାର କପାଳରେ କୁଞ୍ଚିତ ରେଖା ସେହିପରି ଥାଏ, ସେ କହିଲା—ଆପଣଙ୍କୁ ତ ମୁଁ ଚିହ୍ନିପାରିଲି ନାହିଁ ।

—ମୁଁ କଲ୍ୟାଣୀ । ମୋତେ ତୁ ଭୁଲିଯାଇ ପାରିଲୁ ? ମୁଁ କଲ୍ୟାଣୀ । କଲ୍ୟାଣୀ ।

ଶରିଫା କୋଳରେ ଛୋଟ ପିଲାଟିଏ । ତା'ର ଶରୀରରେ ପୂର୍ବପରି ସେହି ଗୌରବର୍ଣ୍ଣ ନହିଁ, ତମ୍ବାଳିଆ ହୋଇଯାଇଛି । କପାଳରେ ଭାଙ୍ଗ ବଢ଼ିଛି ଶରିଫାର । ସେ ପ୍ରଶ୍ନକରେ—କେଉଁ କଲ୍ୟାଣୀ ?

—କାଳିବାଡ଼ିର ହରିନାରାୟଣ ରାୟ ମୋର ବାପା । ତୋ' ଘର ପାଖରେ ଆମର ଘର । ଆମେ ଦୁହେଁ ଖୁବ୍ ବନ୍ଧୁ ଥିଲେ ।

ଶରିଫାର ବିସ୍ମୟ କ୍ରମେ କ୍ରମେ କମିଯାଏ । କପାଳରେ ଥିବା ଭାଙ୍ଗଗୁଡ଼ିକ କପାଳରେ ମିଳାଇଯାଏ । ସେ ହସି ହସି କୁହେ—ଓ, କିପରି ଅଛନ୍ତି ?

—ତୁ ମୋତେ କ'ଣ ଆପଣ ବୋଲି ଡାକୁଛୁ ଶରିଫା ?

ଶରିଫା ଅପ୍ରସ୍ତୁତ ହସ ହସେ । କୋଳର ପିଲାଟା ହଠାତ୍ କାନ୍ଦି ଉଠେ । ଶରିଫା ପିଲାଟି ଆଡ଼େ ମନୋଯୋଗ ଦେଲା । କାନ୍ଦନା, କାନ୍ଦନା କହି ପିଲାଟିକୁ ଝୁଲାଇ ଝୁଲାଇ ସାନ୍ତ୍ୱନା ଦେବାକୁ ଲାଗିଲା । କଲ୍ୟାଣୀଠାରୁ ଏହି ପିଲାଟିର କ୍ରନ୍ଦନ ସ୍ୱର ତାକୁ ଅଧିକ ପରିମାଣରେ ଆକୃଷ୍ଟ କରିଥିଲା । ପିଲାଟିର କାନ୍ଦଣା ବନ୍ଦ କରାଇବା ପାଇଁ ସେ ଦୂରେଇଗଲା । ଦୀପେନ୍ ପରମ ଆଗ୍ରହ ସହକାରେ ଏସବୁ ଦେଖୁଥିଲା । ସେ କେତେଥର ଶରିଫାର ନାମ ଶୁଣିଛି, ଶରିଫା ଖେଳରେ ହାରିଗଲେ କାନ୍ଦିବା କଥା ଶୁଣି ଦୀପେନ୍ କହୁଥିଲା—'ଶରିଫା ଆଣ୍ଟି କ'ଣ ଜାଣନ୍ତି ନାହିଁ—ଫେଲୁଅର୍ ଇଜ୍ ଦି ପିଲାର୍ ଅଫ ସକ୍‌ସେସ୍ ।' କଲ୍ୟାଣୀ କେବେ ବିଷଣ୍ଣ ଅବସ୍ଥାରେ ବସିଥିବାର ଦେଖିଲେ ଦୀପେନ୍ କହୁଥିଲା—'କାହାପାଇଁ ମନ ଖରାପ କରୁଛ ମା', ଅଜା ଆଈ ? ଶରିଫା ଆଣ୍ଟି ?'

ଶରିଫା ପିଲାଟିକୁ କେଉଁଠାରେ ରଖିଆସିଲା । ଆସିବା ପରେ ପୁଣି ସେହି କୃତ୍ରିମ ହସ । ତା'ର ଦାନ୍ତ ଫାଙ୍କରେ କଳା କଳା ଦାଗ, ପାନଜର୍ଦ୍ଦାର ଦାଗ । ହସି ହସି କହିଲା—କେବେ ଆସିଲୁ ?

—ଆଜି ଆସିଲି । ସକାଳୁ ବାହାରିଥିଲି ।

—ଏହି ପିଲାଟି ବୋଧହୁଏ ତୋ ପୁଅ ? ପିଲାର ନାମ କ'ଣ ?

—ଦୀପେନ୍ । ସେ ପିଲାଟି କ'ଣ ତୋର ? ତୋର ପିଲାପିଲି କେତୋଟି ?

—ଆଲ୍ଲାଙ୍କ କୃପାରୁ ମୋର ପାଞ୍ଚ ଝିଅ ଆଉ ଦୁଇ ପୁଅ ।

—ତୋର ସାତୋଟି ପିଲା ?

ଶରିଫା ମୁହଁରେ ଲୁଗାକାନି ଚାପିଧରି କହିଲା—ଦୁଇଟି ଝିଅର ବାହାଘର ହୋଇଯାଇଛି ।

—ସତେ ନା କ'ଣ ? କେବେ ବାହାଘର କଲୁ ? କି ଆଶ୍ଚର୍ଯ୍ୟ ସତେ । ମୋର ବୋଧହୁଏ ଝିଅ ବାହା ଦେବାର ସମୟ ହୋଇଗଲା । ସତରେ ଶରିଫା ଆମେ କେତେ

ବୟସ୍କ ହୋଇଯାଇଛୁ, ନା ? ମନେହେଉଛି କାଲିପରି । କାଲି ଯେପରି ଆମେ ଏକ୍କା ଦୋକ୍କା ଖେଳିଛୁ । ଏକ, ଦୁଇ, ତିନି, ଚାରି, ପାଞ୍ଚ ଯମୁନା ଦିଲ୍ଲୀ । ତୁ ଜାଣୁ, ମଝିରେ ମଝିରେ ବର୍ତ୍ତମାନ ମଧ ମୁଁ ସ୍ୱପ୍ନରେ କୁତୁକୁତୁ ଖେଳେ । ତୋର କ'ଣ ଏପରି ହୁଏ ?

ଶରିଫା ଦୀପେନ୍‌କୁ ଦେଖାଇ କହିଲା—ତା'ର କ'ଣ ଆଉ ଭାଇ ଭଉଣୀ ନାହାନ୍ତି ?

—ହଁ । ବଡ଼ଝିଅର ନାମ ଜୟିଷା ।

—ଓ ।

କଲ୍ୟାଣୀ ଆଖିରେ ବିକଳ ଭାବ ନେଇ ଶରିଫା ମୁହଁକୁ ଅନେଇ ରହିଲା, ଶରିଫା ଚଟାଣକୁ ଚାହିଁ ନିରବରେ ବସି ରହିଥିଲା । ଅପରାହ୍ଣ ହେଲେ କଲ୍ୟାଣୀ ଶରିଫାର ହାତଧରି ନଈକୂଳକୁ ଚାଲିଯାଏ । ଶରିଫାର ହାତ ଆଡ଼କୁ ଅନାଇ ଦେଖିଲା, ଦୁଇ ହାତରେ ଦୁଇପଟ ଅନନ୍ତବଳା । ହଠାତ୍ କୌଣସି ପ୍ରସଙ୍ଗ ନାହିଁ, କଲ୍ୟାଣୀର ମନେପଡ଼ିଲା—ନଡ଼ିଆଗଛ ପରିଷ୍କାର କରିବା ପାଇଁ ଘରକୁ ଲୋକ ଆସୁଥିଲେ, ନଡ଼ିଆପତ୍ର କାଟି କାଟି ସ୍ତୂପ ଆକାରରେ ପଡ଼ିଆରେ ଗଦା କରୁଥିଲେ । ଏହି ନଡ଼ିଆପତ୍ରରୁ ଖଡ଼ିକା (କାଠି) ବାହାର କରିବା ପାଇଁ ସରଳାବାଳା ଦୁଇ ତିନିଜଣ ଲୋକଙ୍କୁ ନିଯୁକ୍ତ କରୁଥିଲେ । ସେହି ଖଡ଼ିକାରେ ଘର ପାଇଁ ଝାଡୁ ତିଆରି ହେଉଥିଲା । କଲ୍ୟାଣୀ ଆଉ ଶରିଫା ଖଡ଼ିକା ବାହାର କରାଯାଇଥିବା ନଡ଼ିଆପତ୍ରରେ ହାତରେ ବାନ୍ଧିବାପାଇଁ ଘଡ଼ି ଓ ପେଁକାଳି ତିଆରି କରୁଥିଲେ । ସେମାନେ ହାତରେ ଘଡ଼ିବାନ୍ଧି ପୁଁ ପୁଁ ଶବ୍ଦକରି ପେଁକାଳି ବଜାଇ ଘରତମାମ ଘୂରିବୁଲିବାରେ ଲାଗୁଥିଲେ । ଏହି ହାତ ତ ସେହି ହାତ । ଶରିଫା କ'ଣ ଭୁଲିଯାଇଛି ସେହି ସବୁଜପତ୍ରର ଘଡ଼ି ଦିଗକୁ ଅନାଇ ଘଡ଼ି ଚିହ୍ନିପାରୁ ନଥିବା ବୟସରେ ସେମାନେ ଦଶଟା ବାଜିଥିବା ସମୟରେ ଛଅଟା ବାଜିଛି ଆଉ ଦୁଇଟା ବାଜିଥିବା ସମୟରେ ନଅଟା ବାଜିଛି ବୋଲି କହୁଥିଲେ ? ଏହି ଅଜ୍ଞତା ସକାଶେ ଜ୍ୟୋତିଭାଇ ଓ ଆନିସଭାଇ ଖୁବ୍ ହସୁଥିଲେ ।

ସେହି ନଡ଼ିଆପତ୍ର ପେଁକାଳି ତିଆରି ସମ୍ପର୍କିତ ଘଟଣା ମନେଅଛି କି ନାହିଁ ଶରିଫାକୁ ପଚାରିଲେ କିପରି ହୁଅନ୍ତା ? ପଚାରିବା ପୂର୍ବରୁ ହଠାତ୍ ଶରିଫା ଉଠି ଘର ଭିତରକୁ ଚାଲିଗଲା । ଘରୁ ଫେରିବା ସମୟରେ ତା'ର ପଛେ ପଛେ ହାତରେ ଟ୍ରେ ଧରି ପିଲାଟିଏ ଭିତରକୁ ଆସିଲା । ଟ୍ରେ'ଟିରେ ଟୋଷ୍ଟ ବିସ୍କୁଟ, ଚେନାଚୂର ଓ ଚା' ଥିଲା । କଲ୍ୟାଣୀ ଓ ଦୀପେନ ମଧ୍ୟାହ୍ନରେ କିଛି ଖାଇନଥିଲେ । ଶରିଫାର ବା ଦୋଷ ରହିଲା

କେଉଁଠି ? ସେ ତ ଆଉ ଜାଣିନଥିଲା ସେମାନେ ଏପର୍ଯ୍ୟନ୍ତ ଅଭୁକ୍ତ ରହିଛନ୍ତି । ଦୀପେନ ଚେନାଚୂର ପ୍ଲେଟ୍‌ଟିକୁ ପାଖକୁ ଟାଣିନେଲା । କଲ୍ୟାଣୀ ଚା' ପିଉ ପିଉ କହିଲା—'ଶରିଫା, ଘରେ କ'ଣ ଭାତ-ଫାତ କିଛି ନାହିଁ । ଆମେ ମଧ୍ୟାହ୍ନରେ କିଛିହେଲେ ଖାଇନାହୁଁ ।' ଏ କଥା କହିବାରେ କଲ୍ୟାଣୀ ସାମାନ୍ୟତମ ସଙ୍କୋଚ ଅନୁଭବ କଲାନାହିଁ । ଶରିଫା ନିକଟରେ ଭାତ କଥା କହିବା ପାଇଁ ସେ ବା ଦ୍ୱିଧା କରିବ କାହିଁକି ? ଏକ ସମୟରେ ମଧ୍ୟାହ୍ନ ହେଉ ବା ରାତି ହେଉ ତାଙ୍କ ଘରେ ଖାଇବା ପାଇଁ ବସିପଡୁଥିଲା । ବାଲ୍ୟସାଥୀ ନିକଟରେ ଗୋପନ ରଖିବାର କ'ଣ ଦରକାର । ବରଂ ଶରିଫା ଲଜ୍ଜାପାଇ 'ଦେଖୁଛି' ବୋଲି କହି ଉଠିଚାଲିଗଲା । ସେ ଏତେ କମ୍ କଥା କହୁଛି କାହିଁକି ? ସେ ସେହିସବୁ ଅତୀତ ଦିନଗୁଡ଼ିକୁ ଭୁଲିଯାଇଛି ନା କ'ଣ ? ସେହିସବୁ...ସେହିସବୁ...ଅଧାକଟା ଗୁଡ଼ି ପଛରେ ସମଗ୍ର ଅପରାହ୍ଣ ଦୌଡ଼ିବାର ଦିନଗୁଡ଼ିକୁ ତେବେ କ'ଣ କଲ୍ୟାଣୀ ଏକାହିଁ ମନ ମଧ୍ୟରେ ଯତ୍ନରେ ସାଇତି ରଖିଛି ! ଆଉ ସମସ୍ତଙ୍କ ନିକଟରେ ସେଗୁଡ଼ିକ ଝାପ୍‌ସା ! ଦିନେ ଫେରିଆସିବାର ଆଗ୍ରହ ନେଇ ସେ ଯେଉଁ ଜୀବନକୁ ଏକତ୍ର କରୁଥିଲା, ସେ କ'ଣ ତେବେ ଏହି ଫେରିଆସିବା—ଯେଉଁଥିରେ ଶରିଫା ତାକୁ ଦେଖି ଆନନ୍ଦରେ ଉଲ୍ଲସିତ ହେବନାହିଁ, ପ୍ରଗଲ୍‌ଭ ହୋଇ ବିଗତ ତିରିଶ ବର୍ଷର ସ୍ମୃତିଚାରଣ କରିବ ନାହିଁ, ପରସ୍ପରକୁ ବାହୁବନ୍ଧନରେ ଜଡ଼ାଇ ଧରିବେ ନାହିଁ ଯେପରି ଜଣେ ହେଲେ କେହି ମୁକ୍ତିଲାଭ କରି ସେଥିରୁ ପଳାଇ ଯାଇନପାରେ ! କଲ୍ୟାଣୀର ତେବେ ଏହା କିପରି ପ୍ରତ୍ୟାବର୍ତ୍ତନ ! ଅନିର୍ବାଣ ଏୟାରପୋର୍ଟରେ ଛିଡ଼ାହୋଇ କହିଥିଲା—କ'ଣ ଫେରିବ ତ, ନା ସେଠାରେ ରହିଯିବ !

କଲ୍ୟାଣୀ ହସି ହସି କହିଥିଲା—ମୁଁ ତ ଦେଶକୁ ଯାଉଛି । କଲିକତାକୁ ତ ଫେରିଆସିବାକୁ ହିଁ ହେବ, ଯେତେବେଳେ ସଂସାର ବନ୍ଧନରେ ବାନ୍ଧି ହୋଇଛି ।

—ସଂସାର ବନ୍ଧନ ନଥିଲେ ମନେହୁଏ ଆସନ୍ତ ନାହିଁ ?

କଲ୍ୟାଣୀ ହସିଥିଲା । ଏହି ହସର ଅର୍ଥ ଅନିର୍ବାଣ କ'ଣ କରିଥିଲା ତାହା ଅନିର୍ବାଣ ହିଁ ଜାଣେ ।

ବାରମ୍ବାର ବାଦଲର କଥା ତା'ର ମନେପଡ଼େ । ବାଦଲ କେଉଁଠି ରହିଛି, ସେ କ'ଣ ଖୁବ୍ ବଦଳି ଯାଇଛି ! ହଠାତ୍ ଦେଖିଲେ ସେ ବି କ'ଣ ଚିହ୍ନିପାରିବ ନାହିଁ । ଭ୍ରୂକୁଞ୍ଚନ କରି ମୁହଁକୁ ଚାହିଁରହିବ । କଲ୍ୟାଣୀକୁ କହିବାକୁ ପଡ଼ିବ—ସେହି ଯେଉଁ କଲେଜର ପାଠପଢ଼ା ମାରାକରି ବ୍ରହ୍ମପୁତ୍ରରେ ନୌକାରେ ଆମେ ଭାସି ବୁଲୁଥିଲେ, ଆଉ

ବାୟାଚଢ଼େଇ ଭଳି ଘର କରିବା ପାଇଁ ଚାହିଁଥିଲେ । ଗୋଟିଏ ଛୋଟ ଭଲପାଇବାର ଘର...ମୁଁ ସେହି ହତଭାଗିନୀ କଲ୍ୟାଣୀ ।

ଚା' ଦେଇଯାଇଥିବା ପିଲାଟି ଦୁଇଟି ପ୍ଲେଟରେ ଭାତ ଆଉ ଅଣ୍ଡାଭଜା ରଖି ଦେଇଗଲା । କଲ୍ୟାଣୀ ପଚାରିଲା, ଶରିଫା କେଉଁଠି ? ପିଲାଟି କହିଲା—ନମାଜ ପଢୁଛନ୍ତି ।

ଶରିଫା ନମାଜ ପଢ଼େ ? କଲ୍ୟାଣୀର ମନେପଡୁନାହିଁ ସେ କେବେ ନମାଜ ପଢ଼ିବାରେ ଶରିଫାକୁ ଦେଖିଛି । ବରଂ ଦୁର୍ଗାପୂଜାରେ, କାଳୀପୂଜାରେ ସେ କଲ୍ୟାଣୀ ସହିତ ମଣ୍ଡପରୁ ମଣ୍ଡପ ଘୂରିବୁଲେ । ଜ୍ୟୋତିପ୍ରକାଶ, ସୌମେନ, ମାଖନଙ୍କ ଆରତି ଦେଖି ଆନନ୍ଦରେ ହାତତାଳି ଦିଏ । ବିସର୍ଜନ ଦିନ ମହାଦେବଙ୍କ ଶରୀର ଉପରେ ଲାଲ ଜିଭକାଢ଼ି ଛିଡ଼ା ହୋଇଥିବା କାଳୀମୂର୍ତ୍ତି ପଛେ ପଛେ କଲ୍ୟାଣୀ ସହିତ ନଦୀଘାଟକୁ ଯାଏ । ଦୀପେନ୍ ଅଣ୍ଡା ଖାଇବାପାଇଁ ଭଲପାଏ ନାହିଁ । କଲ୍ୟାଣୀ କହିଲା—ଅଣ୍ଡା ଖୁବ୍ ଭଲ ଜିନିଷ ବାବା, ପ୍ରୋଟିନ୍, ଖାଇଦିଅ ।

ଦୀପେନ୍ ଭାତଗୁଡ଼ିକୁ ଏପଟ ସେପଟ କରେ, କଲ୍ୟାଣୀ ମଧ୍ୟ ଗୋଳେଇ ରଖିଦିଏ । ଶରିଫା ନମାଜ ପଢ଼ା ଶେଷକରି ଫେରିଆସି ବସେ, ଯୋଜନ ଦୂରତ୍ୱ ନେଇ ବସିରୁହେ । କଲ୍ୟାଣୀ ଆକୁଳ ସ୍ୱରରେ କହିଲା—ଚାଲ କାଲିବାଡ଼ି ଯିବା ଆମ ଘରକୁ ।

ଶରିଫା ଶାନ୍ତ ସ୍ୱରରେ କହିଲା—ବର୍ତ୍ତମାନ ତ ସେଠାରେ କିଛି ନାହିଁ ।

—ତଥାପି ଯାହା ଅଛି । ଦେଖିଲି, ଜାମୁଗଛଟି ଅଛି ।

ଶରିଫା ଆଶ୍ଚର୍ଯ୍ୟ ହେଲା—ଜାମୁଗଛଟା ଦେଖି କ'ଣ ବା ହେବ ?

କଲ୍ୟାଣୀ ନିର୍ବାକ୍ ଭାବରେ ଚାହିଁରହିଲା, ବୁଝାଇ ପାରିଲାନାହିଁ ଜାମୁଗଛ ଦେଖି ତା'ର କ'ଣ ହେବ । ଜାମୁଗଛଟାରେ ସେପରି କ'ଣ ବା ଦେଖିବାର ଅଛି ? ଦୀପେନ ଅସ୍ଥିରତା ଅନୁଭବ କରୁଥିଲା, କଲ୍ୟାଣୀ କହିଲା—'ବାବା, ଯା ସେମାନଙ୍କ ସହିତ ବାରଣ୍ଡାରେ ଖେଳିବୁ ।' ଦୀପେନ୍ ବାରଣ୍ଡାକୁ ଚାଲିଗଲା । କଲ୍ୟାଣୀ ପାଦ ନିକଟରେ ଲୁଗାପଟା ଭର୍ତ୍ତି ହୋଇଥିବା ବ୍ୟାଗ୍‌ଟି ପଡ଼ିରହିଛି । ତା'ର ମୁହଁ ହାତ ଧୋଇବା ଖୁବ୍ ଦରକାର । ବସ୍‌ରେ ଯାତ୍ରାକରିବା ଫଳରେ ଦେହ ଧୂଳିରେ ଭରିଯାଇଛି । ଶରିଫା ଚଢ଼ାସ୍ୱରରେ କହିଲା—'ଆରେ ଲତିଫା, ନିମ୍ମି, ନାଜିରା ଅଯୁକରି ଶୀଘ୍ର ନମାଜ ପଢ଼ିବାକୁ ଯାଅ ।'

ସାଲୋୟାର, ପଞ୍ଜାବି, ଓଢ଼ଣା ପକାଇଥିବା ତିନୋଟି କିଶୋରୀ ମାଆଙ୍କ କଣ୍ଠସ୍ୱର ଶୁଣି ଭିତରକୁ ଆସିଲେ । କଲ୍ୟାଣୀକୁ ବିସ୍ଫାରିତ ଚକ୍ଷୁରେ ଚାହିଁ ଦେଖିବାକୁ ଲାଗିଲେ । କଲ୍ୟାଣୀ କହିଲା—ବୋଧହୁଏ ଏମାନେ ତୋର ଝିଅ ?

ଝିଅମାନେ ଧୀର ମନ୍ଥର ଗତିରେ ଭିତର ଘରକୁ ଚାଲିଗଲେ । କଲ୍ୟାଣୀ ସେମାନଙ୍କୁ ଡାକିଲା—ଶୁଣ ।

ଜଣେ ହେଲେ କେହି ଛିଡ଼ାହୋଇ ରହିଲେ ନାହିଁ । ଓଢ଼ଣାରେ ମୁହଁ ଲୁଚାଇ ଚାଲିଗଲେ ।

କଲ୍ୟାଣୀ କହିଲା ଝିଅଗୁଡ଼ିକ ଖୁବ୍ ଲାଜକୁରୀ ନା କ'ଣ ? ଠିକ୍ ତୋର ବିପରୀତ, ନା ?

ଶରିଫା ସମ୍ଭବତଃ ବିପରୀତ ଶବ୍ଦଟିରେ ଖୁସି ହେଲାନାହିଁ । ହଁ କିମ୍ବା ନା କିଛି ହେଲେ ଉତ୍ତର ଦେଲାନାହିଁ ।

କଲ୍ୟାଣୀ ପଚାରିଲା—ଶରିଫା, ତୁ କେତେ ପର୍ଯ୍ୟନ୍ତ ପଢ଼ାପଢ଼ି କଲୁ ?

—ଆଇ.ଏ. ପରୀକ୍ଷା ଦେବାର କଥାଥିଲା । ବାହାଘର ହୋଇଗଲା । ଆଉ ପରୀକ୍ଷା ଦେଇନାହିଁ ।

—ଆଉ କାଳିବାଡ଼ି ଯାଉନା ?

—ଖୁବ୍ କମ୍ ?

—ଆମର ଘରଟା କିଏ ନେଲାରେ, ବର୍ତ୍ତମାନ ସେଠାରେ କିଏ ରହୁଛନ୍ତି ? ଘରଟି କେଉଁମାନେ ଭାଙ୍ଗିଦେଲେ ? ଗଛଗୁଡ଼ିକୁ କିଏ କାଟିପକାଇଲେ ?

ଶରିଫା ମୁହଁ ବୁଲାଇନେଇ କହିଲା—ଜାଣେନାହିଁ ।

—ଏଇ ଦେଖ, ଦେଖ ମାଟି ଆଣିଛି । ଆମ ଘରର ମାଟି । କଲ୍ୟାଣୀ ବ୍ୟାଗ୍ ଖୋଲି ମାଟିର ପିଣ୍ଡୁଳାଟି ବାହାରକଲା ।

ଶରିଫା ତାକୁ ଛୁଇଁ ଦେଖିଲା ନାହିଁ । କହିଲା—ଓ । ଯେପରି ତେୟମ୍ମୁମ କରିବାର ମାଟି ।

—ତେୟମ୍ମୁମ ? ତେୟମ୍ମୁମ କ'ଣ କିରେ ?

—ଶରୀର ଅସୁସ୍ଥ ହେଲେ ପାଣି ନଛୁଇଁ ତୈମୁମ କଲେ ମଧ୍ୟ ନମାଜ କରାଯାଇପାରେ । ଘରେ ମୁଁ ମଧ୍ୟ ମାଟି ରଖିଛି ।

କଲ୍ୟାଣୀର ମନେହେଲା ଏହା ମଧ୍ୟ ତୈମୁମ କରିବା ପାଇଁ ଉଦ୍ଦିଷ୍ଟ ମାଟି । ଏହାକୁ ସ୍ପର୍ଶକଲେ ଶରୀର ପବିତ୍ର ହୁଏ । ଏହି ମାଟିରେ ରୁମାଲଚୋରି ଖେଳର ବାସ୍ନା ଭରିରହିଛି । ଏ ମାଟି ଯଦି ପବିତ୍ର ନୁହଁ, ତେବେ ଆଉ କ'ଣ ବା ପବିତ୍ର !

କଲ୍ୟାଣୀର ହୃଦୟ ଭାଙ୍ଗିପଡ଼େ । ଶରିଫା ମଳିନ ମୁହଁରେ ବସିରୁହେ । ସେ ଶରିଫାର ଆହୁରି ନିକଟକୁ ଘୁଞ୍ଚିଆସେ । ଆହୁରି ଅଧିକ ବିକଳ ସ୍ୱରରେ ପ୍ରଶ୍ନକରେ— ରୁଖ୍‌ସାନା କିପରି ଅଛି ? ସେଲିମ ? ମାଖନ ? ସୌମେନ ? ଏମାନେ କେଉଁଠି ? ଅନିଲକକାଙ୍କ ଖବର କିଛି ଜାଣିଛୁ ?

—ନିଜ ସଂସାରରେ ଏତେ ଜଞ୍ଜାଳ ଯେ ସେମାନଙ୍କ ଖବର ରଖିବାକୁ ସମୟ କାହିଁ ?

ମୁନି କିପରି ଅଛି ? ଶୁଣିଲି ଢାକାରେ ରହୁଛି । ଏତେ ଛୋଟ ଝିଅଟେ ଘରସଂସାର କରିଛି ? ତୋର ମନେଅଛି, ଦିନେ ସେ ପାଣିକଳ ଚଟାଣ ଉପରେ କଚାଡ଼ି ହୋଇ ପଡ଼ିଥିଲା, ସେଦିନ ଖଣ୍ଡିଏ ହଳଦୀ ରଙ୍ଗର ହାଫପ୍ୟାଣ୍ଟ ପିନ୍ଧିଥିଲା ?

ଶରିଫା ଆଶ୍ଚର୍ଯ୍ୟ ହୋଇ ଚାହିଁରୁହେ । କେବେ ମୁନି କଚାଡ଼ି ପଡ଼ିଥିଲା, ସେ କେଉଁ ପିଲାଦିନର କଥା, ସେ କ'ଣ ପିନ୍ଧିଥିଲା, ତାହା ପୁଣି କେଉଁ ରଙ୍ଗର ପ୍ୟାଣ୍ଟ ଥିଲା କି ନଥିଲା କିଏ ବା ଜାଣେ । ଏତେ ସାମାନ୍ୟ ଘଟଣା କ'ଣ କେହି ମନେରଖିପାରେ ?

—ଶାହାନା ଫୁଲଦାନି ଫୋପାଡ଼ିଥିଲା । ତା'ର କପାଳ କଟି ଯାଇଥିଲା । ଦାଗଟା କ'ଣ ଶେଷ ପର୍ଯ୍ୟନ୍ତ ମିଶିଯାଇଥିଲା ?

—କେଜାଣି, ସେକଥା ଜାଣିନାହିଁ ।

—ତୋର ମନେଅଛି ଶରିଫା, ଦିନେ ତୁମ ଘର ଛାତ ଉପରେ ଆମେ ଶୋଇ ଗପ କରୁ କରୁ ନିଦରେ ଶୋଇପଡ଼ିଥିଲୁ । ରାତି ତମାମ ଆମକୁ ଖୋଜି ଖୋଜି କେହି ପାଇନଥିଲେ । ବାପା ଥାନାରେ ଡାଏରି କରି ଆସିଥିଲେ । ସକାଳ ହେବାରୁ ଆଖି ମଳି ମଳି ଆମେ ଓହ୍ଲାଇ ଆସିଥିଲୁ ।

ମଳି ମଳି (ଡଲତେ ଡଲତେ) ଶବ୍ଦ ଦୁଇଟି ବ୍ୟବହାର କରିବା ପରେ କଲ୍ୟାଣୀର ଚେତନା ଆସିଲା ବାସ୍ତବରେ ସେ ମୟମନସିଂହର ଭାଷାରେ କଥା କହିବା ଉଚିତ ।

ଜୟିଷା ଦୀପେନଙ୍କ ସହିତ ମଝିରେ ମଝିରେ ଏପରି ଭାବରେ କଥା ସେ କୁହେ–'କିରେ ତରା ଖାଇବି ନା ? ଭାଲ କଇରା ଲେଖାପଢ଼ା ନା କରିଲେ ପରୀକ୍ଷାୟ ଲାଟ୍ଟୁ ପାଇବି କଇଲାମ ।' ଶୁଣି ଅନିର୍ବାଣ ବିରକ୍ତ ହୋଇ କୁହେ--ପୁଅ ଝିଅଙ୍କୁ କ'ଣ ଶିଖାଉଛ କୁହ ତ ! ତୁମେ କ'ଣ ଏମାନଙ୍କୁ ମଣିଷ ହେବାକୁ ଦେବନାହିଁ ?

କଲ୍ୟାଣୀ ମନେ ମନେ ହସେ, ମୁଁ କ'ଣ ମଣିଷ ହୋଇନି ? ଅନିର୍ବାଣଟା ପ୍ରକୃତରେ ବୋକା । ତା'ର ବୋକାମି ସମ୍ପର୍କରେ ଭାବି କଲ୍ୟାଣୀକୁ ଅଧିକ ହସଲାଗେ ! ହସି ହସି ସେ କୁହେ—ଶରିଫା, ଟୟେଲେଟ୍‌ଟା ଦେଖାଇଦେ ତ, ସ୍ନାନ କରିଆସେ ।

କଲ୍ୟାଣୀ କୌଣସି ବିଭେଦ ରଖିବାକୁ ଚାହେନାହିଁ । ଭାଷାର ଦୂରତ୍ୱଟିକୁ ଘୁଞ୍ଚାଇଦେଇ ଶରିଫାର ନିକଟସ୍ଥ ହେବାକୁ ଚାହେଁ । ବ୍ୟାଗରୁ ନିଜର ସାବୁନ ତଉଲିଆ ବାହାର କରି ଟୟେଲେଟ୍‌କୁ ଯାଏ । ଶରିଫା ପଛେ ପଛେ ଆସେ, କଲ୍ୟାଣୀ ଏକଚାଳି ଦିଗକୁ ଚାହିଁ ପଚାରେ—ତୁମ୍ଭମାନଙ୍କର ଟିଉବଓୟେଲ ନାହିଁ ?

ଶରିଫା ଦ୍ରୁତ ବେଗରେ ମୁଣ୍ଡହଲାଏ ଯେପରି ଟିଉବଓୟେଲ ଅତି ଦରିଦ୍ର ଲୋକମାନଙ୍କ ଘରର ପଦାର୍ଥ । ଭଦ୍ରଲୋକମାନଙ୍କ ଘରେ ଏହାର ସ୍ଥାନ ନାହିଁ । କଲ୍ୟାଣୀ ମୟମନସିଂହର ଟିଉବଓୟେଲ ଚାପି ପାଣି ପିଇବା ଉଦ୍ଦେଶ୍ୟରେ କେତେକାଳ ଅପେକ୍ଷା କରିଥିଲା । ସ୍ନାନାଗାର ମଧ୍ୟରେ ଛିଡ଼ାହୋଇ ସେ ଭାବେ କୌଣସି କାରଣରୁ କ'ଣ ଶରିଫାର ମନରେ ଦୁଃଖ ? ଏପର୍ଯ୍ୟନ୍ତ ସେ ତ ତା' ରହିବାପାଇଁ କୌଣସି ଘର ଦେଖାଇ ଦେଲାନାହିଁ ? ଏହାଛଡ଼ା ଥରେହେଲେ ମଧ୍ୟ ରହିବାପାଇଁ କହିନାହିଁ । ଏପରିକି ଭାତ ଖାଇବା କଥା କିମ୍ବା ସ୍ନାନ କରିବା କଥା ମଧ୍ୟ କଲ୍ୟାଣୀ ନିଜ ତରଫରୁ କହିଛି । ଶରିଫା ଏତେ ନିସ୍ପୃହ କାହିଁକି ? ତା'ର କ'ଣ ସେପରି କିଛି ବଡ଼ ଧରଣର ଅସୁସ୍ଥତା ହୋଇଥିଲା ଯେଉଁଥିରେ ତା'ର ସ୍ମୃତିଶକ୍ତି ଲୋପପାଇ ଯାଇଛି ? ତେବେ କ'ଣ ହୋଇଛି ଶରିଫାର, ହଜାର ହଜାର ବର୍ଷ ଅତିବାହିତ ହୋଇଯାଇନାହିଁ ଯେ ଶୈଶବ କୈଶୋରର ସବୁକିଛି ସ୍ମୃତି ଭୁଲିଯାଇ ହେବ ? ବିଶେଷ କରି ଏସବୁ କ'ଣ ଭୁଲିଯିବାର ଜିନିଷ ? କେହି କ'ଣ ଭୁଲିଯାଇପାରେ ? ଭୁଲିହୁଏ ଦୁଇଜଣ ବଡ଼ ବିଜ୍ଞାନୀ ହେବେ, ତା'ପରେ ପିଠି ପଛରେ ଦୁଇଟା ଡେଣା ଲଗାଇ ଉଡ଼ିବୁଲିବେ ସମସ୍ତ ଆକାଶରେ, ସେହି ସବୁ ସ୍ୱପ୍ନ ? ସେମାନେ ଖାଇବେ ନାହିଁ, ପିନ୍ଧିବେ ନାହିଁ, ଦୁନିଆର ପାର୍ଥିବ ପଦାର୍ଥ ନେଇ ସେମାନେ ଚିନ୍ତା କରିବେ ନାହିଁ, କେବଳ ଗୋଟିଏ ଗ୍ରହରୁ ଅନ୍ୟ ଏକ ଗ୍ରହକୁ ଉଡ଼ିବୁଲିବେ । ଚନ୍ଦ୍ରକୁ ଯିବେ, ମଙ୍ଗଳଗ୍ରହ, ବୁଧ, ବୃହସ୍ପତି, ନେପ୍‌ଚୁନ ସମସ୍ତ କିଛି ବୁଲି ବୁଲି ଦେଖିବେ । ଶେଷପର୍ଯ୍ୟନ୍ତ

ସେହି ଚନ୍ଦ୍ରକୁ ତ ମଣିଷ ଗଲା । ମଣିଷ ଯିବାର ଅନେକ ପୂର୍ବରୁ ସେମାନେ, ଶରିଫା ଆଉ କଲ୍ୟାଣୀ ବହୁବାର ମନେ ମନେ ଯାଇଛନ୍ତି । ଶରିଫା ତେବେ କ'ଣ ସବୁକିଛି ଭୁଲିଯାଇଛି ? ସେ ଯାହା ହେଉନା କାହିଁକି ମଣିଷ କ'ଣ କେବେ ଏତେକିଛି ଭୁଲିଯାଇପାରେ ? ଭୁଲିବାର ଅର୍ଥ ହେଉଛି ନିଜକୁ ଭୁଲିଯିବା । କଲ୍ୟାଣୀ ମନଭରି ସ୍ନାନକଲା । କେତେଦିନ ଧରି ସେ ଦେଶର ଜଳରେ ସ୍ନାନକରି ନଥିଲା । ପୋଖରୀ କିମ୍ବା ଟିଉବଓୟେଲର ଜଳ ନହେଉ ପଛେ ତଥାପି ମଧ୍ୟ ଏହା ଦେଶର ଜଳ । ଏହି ଜଳରେ ସେ ନିଜ ଦେଶର ବାସ୍ନା ପାଏ । ଏପର୍ଯ୍ୟନ୍ତ ସେ ଜଳପାନ କରିନାହିଁ । ତା'ର ହୃଦୟ ମଧ୍ୟରେ ଥିବା ତୃଷ୍ଣା କୌଣସିମତେ ଦୂରହେବାର ନୁହେଁ । ସ୍ନାନ ପାଇଁ ଉଦ୍ଦିଷ୍ଟ ଜଳକୁ ସେ ଆଞ୍ଜୁଳାରେ ଭରିଦେଖେ, ତା'ର ପଲକ ପଡ଼େନାହିଁ ।

ସ୍ନାନାଦି କାର୍ଯ୍ୟ ଶେଷକରି କଲ୍ୟାଣୀ କହିଲା—ସହରଟିକୁ ବୁଲି ଦେଖିବା ପାଇଁ ଇଚ୍ଛା କରୁଛି । ଚାଲ ବୁଲିଆସିବା ।

ଶରିଫା ଶୋଇବା ଘର ଖଟଉପରେ ବସିଥିଲା, ନିରୁଦ୍‌ବେଗ କଣ୍ଠରେ କହିଲା—ମୁଁ ତ ଯାଇପାରିବି ନାହିଁ । ପିଲାଙ୍କ ବାପାଙ୍କୁ ନପଚାରି ମୁଁ ଯାଇପାରିବି ନାହିଁ ।

—ନପଚାରି ଗଲେ ତୋର କ'ଣ କରିବେ ଶୁଣେ ?

ଶରିଫା ମ୍ଳାନ ହସିଲା । କଲ୍ୟାଣୀ ବୁଝିପାରିଲା ନାହିଁ ବର୍ତ୍ତମାନ ତା'ର କ'ଣ କରିବା ଉଚିତ । ସେ କ'ଣ ଶରିଫାର ଶୀତଳ ଶରୀରଟିକୁ ହଲାଇ ଦେଇ ଥରେ କହିବ—କ'ଣ ତୁ ମରିଯାଇଛୁ ନା କ'ଣ ?



## = ଛଅ =

ଦୀପେନ ଆଖିବନ୍ଦ କରିଛି, ନିଦରେ ଶୋଇନାହିଁ ବୁଝିପାରି କଲ୍ୟାଣୀ ପଚାରିଲା—ବୋଧହୁଏ ସେମାନଙ୍କ ସହ ଖେଳିଲୁ ? କ'ଣ ଖେଳିଲୁ ?

ଦୀପେନ ଥରଥର କଣ୍ଠରେ କହିଲା—ମୁଁ ଖେଳି ନାହିଁ । ସେମାନେ ପିମ୍ପୁଡ଼ି ପିମ୍ପୁଡ଼ି ଖେଳୁଥିଲେ ।

—ପିମ୍ପୁଡ଼ି ପିମ୍ପୁଡ଼ି ପୁଣି କି ଖେଳ ? ଏ ପ୍ରକାର ଖେଳର ନାଁ ତ ଶୁଣିନାହିଁ !

—କାନ୍ଥରେ ଯେତେବେଳେ ଧାଡ଼ିବାନ୍ଧି ପିମ୍ପୁଡ଼ି ଯାଉଥାନ୍ତି ସେମାନେ ବାଛି ବାଛି ନାଲିପିମ୍ପୁଡ଼ିଗୁଡ଼ିକୁ ମାରନ୍ତି, କଳାପିମ୍ପୁଡ଼ି ମାରନ୍ତି ନାହିଁ । ମୁଁ ପଚାରିଲି କଳାଗୁଡ଼ିକୁ କାହିଁକି ମାରୁନାହଁ ? ସେମାନେ କହିଲେ କଳାପିମ୍ପୁଡ଼ି ତ ମୁସଲମାନ, ସେଇଥିପାଇଁ । ତେବେ ନାଲିଗୁଡ଼ିକ କ'ଣ ? ସେମାନେ କହିଲେ ହିନ୍ଦୁ ।

କଲ୍ୟାଣୀର ହୃଦୟ ଥରିଉଠିଲା । ଦୀପେନ ମୁହଁରୁ ସେ କ'ଣ ଶୁଣୁଛି ! ଶରିଫାର ପୁଅଝିଅ ହିନ୍ଦୁ ପିମ୍ପୁଡ଼ି ମାରନ୍ତି ? ଦୀପେନ କଡ଼ଲେଉଟାଇ ଶୋଇପଡ଼େ । କଲ୍ୟାଣୀକୁ ରାତିସାରା ନିଦ ଆସେ ନାହିଁ । ଘରଟିରେ କୌଣସି ଭେଣ୍ଟିଲେଟର ନାହିଁ । ତା'ର ଶରୀରଟି ଝାଳରେ ଭିଜିଯାଏ । ଖଟତଳେ ପିଆଜ ରଖା ହୋଇଛି । ବେଳେବେଳେ ମୂଷା ଦୌଡୁଥାନ୍ତି, ସରସର କରି ସାପଭଳି କିଛି ଗୋଟାଏ ଚାଲିଯାଏ । କଲ୍ୟାଣୀକୁ ନିଦ ଆସେ ନାହିଁ । ତକିଆରେ ମୁହଁଗୁଞ୍ଜି ସେ ଶୋଇରୁହେ ।

ପ୍ରତ୍ୟୁଷରେ ସେ ଦରଜା ଖୋଲି ବାହାରକୁ ଆସେ । ଏତେ ପ୍ରତ୍ୟୁଷରୁ ବାରଣ୍ଡାରେ ବସି ଶରିଫାର ପିଲାମାନେ ଆରବୀ ପଢୁଛନ୍ତି । ଟୋପି ପଞ୍ଜାବି ପିନ୍ଧା ଜଣେ ଲୋକ ସ୍ୱରଧରି କହୁଥିଲେ—'ଆଲହାମଦୁଲିଲଲାହ ହିଁ ରାବିବଲ ଆଲ ଆମିନ ଆର ରାହମାନିର ରାହିମ ।' ପିଲାମାନେ ମଧ୍ୟ ତା' ସଙ୍ଗେ ସଙ୍ଗେ ଏକ ସୁର ଧରିଛନ୍ତି । କଲ୍ୟାଣୀ ବାରେଣ୍ଡାର ଗ୍ରୀଲ ଧରି ଛିଡ଼ାହୋଇ ରୁହେ । ପ୍ରଭାତର ମନ୍ଦ ମନ୍ଦ ପବନ ତାକୁ ଅଳ୍ପ ଅଳ୍ପ ସ୍ପର୍ଶ କରିଯାଏ ।

ସେ ଛିଡ଼ାହେବା ପରେ ସେମାନଙ୍କର ପଢ଼ା ବନ୍ଦ ହୋଇଯାଏ । କଲ୍ୟାଣୀ ଶୁଣେ ଶିକ୍ଷକ ଜଣକ ପିଲାଙ୍କୁ ଫିସ୍‌ଫିସ୍ କରି କହୁଥିଲେ–ହିନ୍ଦୁ ନା କ'ଣ ?

ପିଲାମାନଙ୍କ ମଧ୍ୟରୁ ଜଣେ ଚୁପ୍‌ଚୁପ୍ କରି କହିଲା–ହଁ, ଇଣ୍ଡିଆରୁ ଆସିଛନ୍ତି ।

ଫିସ୍‌ଫିସ୍ କଥା କହିବା କ୍ରମଶଃ ବୃଦ୍ଧିପାଏ । ରାସ୍ତା ଦିଗକୁ ମୁହଁକରି ଛିଡ଼ା ହୋଇଥିବା କଲ୍ୟାଣୀ ବୁଝିପାରିଲା ସେ ଅପସରି ନଯିବା ପର୍ଯ୍ୟନ୍ତ ଏମାନଙ୍କର ପଢ଼ାପଢ଼ି ଆଉ ଆଗେଇ ପାରିବ ନାହିଁ । ସେ ଫେରିଆସିବା ସମୟରେ ଲକ୍ଷ୍ୟକରି ଦେଖିଛି ପ୍ରତିଟି ଚକ୍ଷୁ ତା'ର ଆପାଦମସ୍ତକ ଦେଖିବାରେ ବ୍ୟସ୍ତ ।

ଏହି ପ୍ରକାର ଗୁଞ୍ଜନ ଶରିଫା ଓ ତା' ସ୍ୱାମୀଙ୍କ ମଧ୍ୟରେ ହେବାର ସେ ଗତ ରାତିରେ ମଧ୍ୟ ଶୁଣିଛି । ତା' ସ୍ୱାମୀ କହୁଥିଲେ–ତୁମେ ତ କୌଣସି ସମୟରେ କହିନାହଁ ଯେ ପିଲାବେଳେ ତୁମର ଜଣେ ହିନ୍ଦୁ ବାନ୍ଧବୀ ଥିଲେ !

–ମନେ ନଥିବାରୁ କହିନଥିଲି ।

–କେତେଦିନ ରହିବେ ବୋଲି ମନେ ହେଉଛି ?

–ଜାଣେ ନାହିଁ ।

–ଘରଦ୍ୱାର ନାହିଁ, ଆତ୍ମୀୟସ୍ୱଜନ ନାହାନ୍ତି, ତେବେ ସେ କାହିଁକି ଆସିଛି ?

–ଏ କଥା ତ ବୁଝିନାହିଁ ।

ଘରଦ୍ୱାର ନାହିଁ, ଆତ୍ମୀୟସ୍ୱଜନ ନାହାନ୍ତି, କ'ଣ ଦେଖିବା ପାଇଁ ତେବେ କଲ୍ୟାଣୀ ଆସିଛି–ଅନେକଙ୍କ ଆଗରେ ଏହି ଗୋଟିଏ ପ୍ରଶ୍ନ । ବାସ୍ତବରେ କଲ୍ୟାଣୀ ବୁଝାଇପାରୁନାହିଁ ତଥାପି କାହିଁକି ସେ ଆସିଛି । ଆସି ତା'ର କ'ଣ ବା ଲାଭ ହୋଇଛି ।

ରାତିରେ ଖାଇବସିବା ସମୟରେ କଲ୍ୟାଣୀ କହିଥିଲା–ଶରିଫା ଦିଓଳି ଚାଉଳର ଭାତ ଖାଇବାପାଇଁ ଖୁବ୍ ଇଚ୍ଛା କରୁଛି, ତା' ସହିତ ମାଳ ଶୁଖୁଆ ଭଜା । କଉମାଛର ଝୋଳ କରାଯାଇ ପାରିବ ନାହିଁ ? ଜ୍ୟେଷ୍ଠମାସର ଶେଷ, ଇଲିଶି ଉଠିନାହିଁ ? ସେ ଦେଶରେ ଯେ କ'ଣ ରନ୍ଧାହୁଏ, ମୁହଁରେ ଦେଇପାରେ ନାହିଁ, ସୁକ୍ତ ଛଙ୍କା ପାଞ୍ଚ ପରିବାମିଶା ତରକାରି ଧୋକା ଯେତେ ସବୁ । ମନେଅଛି ଆମେ ବନଶୀ ପକାଇ ମାଛ ଧରୁଥିଲେ ? ଖାଲାମ୍ମା ଲାଟି ମାଛର ଖୁବ୍ ଭଲ ଭର୍ତା କରୁଥିଲେ । କଖାରୁ ପତ୍ରମିଶା ଲୁଣା ଇଲିଶି !

ଆତାହାର କଲ୍ୟାଣୀ ଦିଗକୁ ଅନାଇ ରହିଥିଲା । କଲ୍ୟାଣୀକୁ ଦେଖିଲେ ଶରିଫାଠାରୁ କମ୍ ବୟସ ବୋଲି ମନେହୁଏ । ବଳିଲା ବଳିଲା ଶରୀର, ମେଦନାହିଁ ।

ଆତାହାରର ତୀରବିଦ୍ଧ ଦୃଷ୍ଟି କଲ୍ୟାଣୀର ବକ୍ଷ, ପେଟ, ତଳିପେଟ, କମର, ନିତମ୍ବ ସ୍ପର୍ଶ କରିଯାଏ । ତା'ର ଅନ୍ତର ମଧ୍ୟରେ ଶିହରଣ ସୃଷ୍ଟି ହୁଏ । ଏପ୍ରକାର ଶାଣିତ ତୀରବିଦ୍ଧ ଦୃଷ୍ଟି ସେ ତିଳଜଳାରେ ସୌମିତ୍ର ଚକ୍ଷୁରେ ଦେଖିଥିଲା । ସକାଳ ହେବାରୁ ସେ ବାହାରିବା ପାଇଁ ପ୍ରସ୍ତୁତ ହୋଇଗଲା । ଦୀପେନକୁ ଜାମାପେଣ୍ଟ ପିନ୍ଧାଇ, କାଳିବାଡ଼ି ଯାଉଛି ବୋଲି ଶରିଫାକୁ କହି ସେ ବାହାରିଗଲା । ଦେଖିଲା ଶରିଫାର ମୁହଁରେ ସେହି ନିର୍ଲିପ୍ତ ଭାବ । କପେ ଚା' ଖାଇବାକୁ ଖୁବ୍ ଇଚ୍ଛା ଥିଲା । ଚା' ଖାଇବାର ତୃଷ୍ଣାଟି ସାଥିରେ ନେଇ ସେ ବାହାରି ପଡ଼ିଲା । ସେ ଚାଲିବାକୁ ଲାଗିଲା । ଚାଲୁଚାଲୁ ସେ ରାସ୍ତାକଡ଼ କଦମ୍ବ ଗଛମାନଙ୍କରେ ଫୁଲ ଫୁଟିଥିବାର ଦୃଶ୍ୟ ଦେଖୁଥିଲା । ଏ କ'ଣ ଆଷାଢ଼ସ୍ୟ ପ୍ରଥମ ଦିବସର କଦମ୍ବ ଫୁଲ ! ଆଜି ଯଦି ଅସରାଏ ବର୍ଷା ହୁଅନ୍ତା, ବର୍ଷାରେ ଭିଜିବା ପାଇଁ କଲ୍ୟାଣୀର ଖୁବ୍ ଇଚ୍ଛା ହୁଏ । ପୂର୍ବେ ବର୍ଷା ଆସିଲେ ଅଗଣାସାରା ସେ ଦୌଡ଼ି ବୁଲୁଥିଲା । ପୋଖରୀ ଘାଟରେ ବସି ପାଣିଉପରେ ପଡୁଥିବା ବର୍ଷାର ରିମ୍‌ଝିମ୍ ଶବ୍ଦ ଶୁଣୁଥିଲା । ସରଳାବାଳା କହୁଥିଲେ–ଶୀଘ୍ର ଉଠିଆ, ଜ୍ୱର ହେବ ।

ଥରେ କଲ୍ୟାଣୀକୁ ଜ୍ୱର ହୋଇଥିଲା । ସାତଦିନ ପର୍ଯ୍ୟନ୍ତ କଲେଜ ଯାଇନଥିଲା । ମନେ ମନେ ଭୀଷଣ ଛଟପଟ ଅନୁଭବ କରୁଥିଲା । ଜ୍ୱରର ପ୍ରକୋପରେ ସେ ବାରମ୍ବାର ବାଦଲର କଥା କହିଥିଲା । କେତେ କିଏ କପାଳରେ ପାଣିପଟି ଦେଇଛନ୍ତି, କେତେ କିଏ ହାତର ପିଠି କପାଳରେ ଛୁଆଁଇ ଜ୍ୱରର ଉତ୍ତାପ ମାପିଛନ୍ତି । କିନ୍ତୁ ଯାହାର ସାମାନ୍ୟ ସ୍ପର୍ଶପାଇଁ ତା'ର ପ୍ରାଣ ଆତୁର ହେଉଥିଲା, ସେ ହେଉଛି ବାଦଲ । ହେଲେ ବାଦଲ ତ ଆଉ ଘରକୁ ଆସି ତା'ର ଜ୍ୱର ଦେଖିପାରେନା । ସରଳାବାଳା ଲୁଣ ଗୋଳାଇ ଅଦା ଖାଇବାକୁ ଦିଅନ୍ତି, କଲ୍ୟାଣୀ ଖାଏ ଏବଂ ଉଦାସ ଦୃଷ୍ଟିରେ ଜାମୁପତ୍ର ଫାଙ୍କରେ ଦିଶୁଥିବା ଖଣ୍ଡ ଖଣ୍ଡ ଆକାଶ ଦିଗକୁ ଚାହିଁରୁହେ । ତା'ର ମନେହୁଏ ବାଦଲ ଯଦି ଆକାଶରେ ଘୂରୁଘୂରୁ ହଠାତ୍ ତା'ର ଝରକା ଫାଙ୍କରେ ଥରେ ଚାହେଁ, ଦେଖିବ କଲ୍ୟାଣୀ ମୁହଁ ଶୁଖାଇ ଶୋଇରହିଛି । ତା' ଶଯ୍ୟା ନିକଟରେ ଅଙ୍ଗୁର, କମଳାଲେମ୍ବୁ ଅଭୁକ୍ତ ଅବସ୍ଥାରେ ପଡ଼ିରହିଛି, ସେଗୁଡ଼ିକ ଖାଇବା ପାଇଁ ଇଚ୍ଛା କରୁନାହିଁ । ତା'ର ଏହି ଜ୍ୱରଗ୍ରସ୍ତ ଶରୀର ନେଇ ସେ ଦୂରରେ ଥିବା କୌଣସି ଏକ ଗାଁକୁ ଚାଲଯିବା ପାଇଁ ଇଚ୍ଛାକରେ, ସେହି ଗ୍ରାମର କଣ୍ଟାବୁଦାରେ ଜୁଳୁଜୁଳିଆ ପୋକର ମିଞ୍ଜିମିଞ୍ଜି ଆଲୋକିତ ରାତ୍ରରେ ତା'ର ଗୀତ ଗାଇବାକୁ ଇଚ୍ଛାକରେ–'ମୁଁ ତୁମ ପ୍ରେମରେ ହେବି ସଭିଙ୍କ କଳଙ୍କଭାଗୀ ।' ବାଦଲ ଅତି ନିକଟରେ ବସି ଶୁଣିବ ଆଉ ବିହ୍ୱଳିତ ନେତ୍ରରେ ତାକୁ ଦେଖିବ । ମନରେ ଭାବୁଥିଲା ତା'ର ଯଦି ଡେଣାଥାନ୍ତା, ପକ୍ଷମେଲାଇ ସେ ସମଗ୍ର ଆକାଶ ପରିକ୍ରମଣ କରିପାରନ୍ତା ।

ଉଡ଼ି ଉଡ଼ି ସେ ଆଉ ବାଦଲ ସାତ ସମୁଦ୍ର ତେର ନଦୀ ପାରହୋଇ ଅନ୍ୟଏକ ଅଚିହ୍ନା ଦେଶକୁ ଚାଲିଯାଆନ୍ତେ । କଲ୍ୟାଣୀ ଆକାଶ ଦିଗକୁ ଚାହିଁରୁହେ, ଯେପରି ଏଇ ଆକାଶ ତା'ର ସବୁଠାରୁ ଅନ୍ତରଙ୍ଗ । ଏଇ ଆକାଶ ସହିତ ମନେ ମନେ କେତେ ସେ ଆଳାପ କରୁଥିଲା । ତା'ର ନିକଟସ୍ଥମାନଙ୍କ ମଧ୍ୟରେ ସବୁଠାରୁ ତା'ର ପ୍ରିୟ ଆକାଶ । ସ୍ୱପ୍ନର ସମଗ୍ର ସହରଟି ତା' ହାତରେ । ବର୍ତ୍ତମାନ ତ ଶାସନ କରିବା ପାଇଁ କେହି ନାହିଁ । ସରଳାବାଳା ନାହାନ୍ତି, ହରିନାରାୟଣ ମଧ୍ୟ ନାହାନ୍ତି, କିଏ ଅଛି ଯେ କଲ୍ୟାଣୀକୁ ଟାଣିନେଇ ଟ୍ରେନ୍‌ରେ ଉଠାଇ ଦେବ ! ମୟମନସିଂହ ଜଙ୍କସନଠାରୁ ଢାକାର ଫୁଲବାଡ଼ିଆ ଷ୍ଟେସନ, ଫୁଲବାଡ଼ିଆଠାରୁ ନାରାୟଣଗଞ୍ଜ, ଶୀତଲକ୍ଷାର ଘାଟଠାରୁ ଷ୍ଟିମରରେ ଖୁଲନା, ଖୁଲନାଠାରୁ ବ୍ରଡ଼ଗେଜର ଲାଇନ ଧରି ବେନାପୋଲ, ଧୀରେଧୀରେ ଚାଲି ଚାଲି ସୀମାନ୍ତ ପାରହୋଇ ବନଗାଁଠାରୁ ଶିୟାଲଦା ଉଦ୍ଦେଶ୍ୟରେ ପୁଣି ଟ୍ରେନ । ଏବେ ମନେପଡ଼ିଲେ କଲ୍ୟାଣୀର ଦେହ ଥରିଉଠେ । ରାସ୍ତାରେ ଏତେ ଲୋକ ଚାଲିଛନ୍ତି, ବାଦଲ ଯାଉନାହିଁ ! ଏଇ ଯେଉଁମାନେ ମର୍ଣ୍ଣିଂୱାକ୍ ସାରି, କେହି ବା ବଜାର କରିସାରି ଫେରୁଛନ୍ତି—ଏମାନଙ୍କ ମଧ୍ୟରେ ବାଦଲ ରହିବା କିଛି ଅସମ୍ଭବ ନୁହେଁ । ବାଦଲ ତ ନିଶ୍ଚୟ ସଂସାର କରିଛି, ତା'ର ମଧ୍ୟ ପୁଅଝିଅରେ ଘର ପୂରି ଉଠିଥିବ । ସେଇ ଯେ ଥରେ ସେ କହିଥିଲା ତୁମକୁ ଛାଡ଼ି ମୁଁ ବଞ୍ଚିପାରିବି ନାହିଁ, ବାଦଲ କ'ଣ କଲ୍ୟାଣୀକୁ ଛାଡ଼ି ବଞ୍ଚିନାହିଁ ! ପ୍ରକୃତରେ ଏହିପରି ହିଁ ସମସ୍ତେ କହିଥାନ୍ତି, ମନେହୁଏ କିଛି ପ୍ରାପ୍ତି କରିବା, ତା'ର ନିତାନ୍ତ ଆବଶ୍ୟକ, ତା'ନହେଲେ ସେ ବୋଧହୁଏ ବଞ୍ଚିବ ନାହିଁ, କିନ୍ତୁ ମଣିଷ ଶେଷ ପର୍ଯ୍ୟନ୍ତ ବଞ୍ଚି ହିଁ ଥାଏ । କାହାରି ପାଇଁ ଅନ୍ୟ କାହାର ଜୀବନ ଅପେକ୍ଷା କରି ରହେନା, ଜୀବନ ଏତେ ଛୋଟ ଯେ କାହାକୁ ଛାଡ଼ି ବଞ୍ଚିବି, କାହାକୁ ଛାଡ଼ି ବଞ୍ଚିବି ନାହିଁ ଏ ସବୁର ହିସାବ କରୁ କରୁ ଜୀବନ ଶେଷ ହୋଇଯାଏ । ଆଜି ଯାହା ଜୀବନର ସବୁଠାରୁ ପ୍ରୟୋଜନୀୟ ବସ୍ତୁ କାଲି ହୁଏତ ତାହା ଅସ୍ପୃଶ୍ୟ ମନହୋଇ ପାରେ । ଟାଣ ଖରା ପଡ଼ିଛି । କଲ୍ୟାଣୀ ଗୋଟିଏ ରିକ୍‌ସା ଡାକେ । ରିକ୍‌ସାବାଲାକୁ କୁହେ ଯେଉଁଆଡ଼କୁ ଖୁସି ଚଳାଅ । ଯୁଆଡ଼େ ଇଚ୍ଛା ସିଆଡ଼େ ଚାଲିଯିବାର ଆଗ୍ରହ ତା'ର ଅନେକ ଦିନର । ହେଲେ ଯୁଆଡ଼େ ଯାଉନା କାହିଁକି ସେ ପୁଣି ଫେରି ଆସୁଥିଲା । ଯିବାପାଇଁ ଯେପରି ଆନନ୍ଦ ଥିଲା ଶୀଘ୍ର ଫେରିଆସିବା ପାଇଁ ମଧ୍ୟ ସେହିପରି କଠୋର୍ ଶାସନ ବ୍ୟବସ୍ଥା ଥିଲା । ଥରେ ବାଦଲ ସହିତ କଲ୍ୟାଣୀ ରିକ୍‌ସାରେ ବସିଥିଲା, ଯାଉଯାଉ ଅନେକ ଦୂର ଚାଲିଯାଇଥିଲେ । ଭୟରେ ତା'ର ଅନ୍ତର ଥରି ଉଠିଥିଲା । କେହି ଦେଖିନେଲେ କି ? ସାରା ସହରରେ ହରିନାରାୟଣଙ୍କର ପରିଚିତ ଲୋକ, ଖବର ପହଞ୍ଚିଗଲେ ସର୍ବନାଶ । ସହର ପାରହୋଇ ଖାଗ ଜଳଭଣ୍ଡାର ନିକଟରେ

ପହଞ୍ଚି ମୁହଁରୁ ସେ ହାତ ବାହାର କରିଥିଲା । ବାଦଲ ବାରମ୍ବାର କହୁଥିଲା ତୁମେ ଅତ୍ୟନ୍ତ ଭୟାକୁଳା । ତୁମଦ୍ୱାରା କିଛି ହେବ ନାହିଁ । ଦେଖନ୍ତୁ ନା ସମସ୍ତେ, ଦେଖନ୍ତୁ । କଣଟା ହୋଇଯିବ ! କୁହନ୍ତୁ, ତୁମ ବାପାଙ୍କ ନିକଟରେ କୁହନ୍ତୁ । କ'ଣ ହେବ ! କଲ୍ୟାଣୀ ଜୀବନରେ କିଛି ହେଲେ ହେଲା ନାହିଁ । ସେ ବାଦଲର ଅଦମ୍ୟ ଭଲପାଇବା ନିକଟକୁ ଫେରିପାରିଲା ନାହିଁ, ଫେରିପାରିଲା ନାହିଁ ବାଦଲର ଘନକୃଷ୍ଣ ଶରୀର ନିକଟକୁ । ଅନୁଭବର ସ୍ୱପ୍ନ ନିକଟକୁ ମଧ ସେ ଫେରିପାରିଲା ନାହିଁ । ରିକ୍ସାକରି ଦୁହେଁ ମୁକ୍ତାଗାଛା ଯାଇଥିଲେ । ଜମିଦାର ଘର, କଷଟିପଥର ନିର୍ମିତ ଶିବଲିଙ୍ଗ, ମନ୍ଦିର ପରିକ୍ରମଣ କରି ଯେତେବେଳେ ପୋଖରୀ ଘାଟରେ ସେମାନେ ପହଞ୍ଚିଲେ ବାଦଲ କହିଲା—'ଏଇ ପୋଖରୀରେ ସୂର୍ଯ୍ୟକାନ୍ତ ମହାରାଜ ଯେତେବେଳେ ସ୍ନାନ କରୁଥିଲେ, ମହାରାଜାଙ୍କର ଉପପତ୍ନୀମାନେ ପୋଖରୀର ଚତୁଃପାର୍ଶ୍ୱରେ ହାତରେ ଜଳନ୍ତା ମହମବତି ଧରି ଛିଡ଼ା ହେଉଥିଲେ । ସେମାନେ ଶ୍ୱାସ ବନ୍ଦକରି ରଖନ୍ତି କାଳେ ଶ୍ୱାସଲାଗି ମହମବତି ନିଭି ନଯାଏ, ଯାହାର ମହମବତି ନିଭେ ନାହିଁ ମହାରାଜ ତା' ସହିତ ସେହି ରାତ୍ରଟି ଯାପନ କରନ୍ତି ।' ଏହାଶୁଣି କଲ୍ୟାଣୀ କହିଥିଲା—'ମୁଁ ହୋଇଥିଲେ ଫୁ-କରି ନିଜେ ହିଁ ବତି ନିଭାଇ ଦିଅନ୍ତି ।' ଦୁଇଜଣଯାକ ଗୋପାଳଙ୍କ ଦୋକାନରେ ବସି ମଣ୍ଡା ଖାଇଥିଲେ । ଆହା କି ସୁସ୍ୱାଦୁ ସେହି ମଣ୍ଡା ! କଲିକତା ଲୋକମାନେ ରସଗୋଲା ବିଷୟରେ ଆହା-ଆହା ଭାବ ଦେଖାଇଲେ କଲ୍ୟାଣୀ ରାଗିଯାଏ । ମୁକ୍ତାଗାଛାର ମଣ୍ଡା ଯଦି ସେ ଥରେମାତ୍ର ଏଠାରେ ଖୁଆଇ ପାରନ୍ତା ! ଶାନ୍ତି ସୁନୀତି କଲିକତାର ସନ୍ଦେଶକୁ କେନ୍ଦ୍ରକରି ପାଟିତୁଣ୍ଡ କରୁଥିବାର ଦେଖି ସେ ଥରେ କହିଥିଲା—'ଆମର ମଣ୍ଡାପିଠା କେଡ଼େ ମଜା ।' ଶୁଣି ସେମାନେ ହୋ-ହୋ କରି ହସି ଉଠିଥିଲେ । କହିଥିଲେ—'ମଜା କ'ଣ ହେ । ଖାଇବା ପଦାର୍ଥରେ ଗୋଟାଏ ମଜା କ'ଣ ? ଗଳ୍ପରେ ମଜା ହୁଏ, ମଜା ହୁଏ ଲୋକକୁ ନେଇ ।' କଲ୍ୟାଣୀ ଖୁବ୍ ଲଜ୍ଜିତ ହୋଇଥିଲା । ମଣ୍ଡାପିଠାର ସ୍ୱାଦକୁ ଆଲୋଚନା ପରିଧି ଭିତରେ ନରଖି ଏମାନେ 'ମଜା' ଶବ୍ଦକୁ ନେଇ ପରିହାସରେ ମାତିଗଲେ । ମୁକ୍ତାଗାଛାଠାରୁ ଫେରିବା ରାସ୍ତାରେ ଘନଶ୍ୟାମପୁରଠାରେ ବାଦଲ ତା'ର ହାତଛୁଇଁ କହିଥିଲା—'ଆମେ ଏଠାରେ ଏକ ନଡ଼ାଛପର ଘର କରି ରହିବା ।' କଲ୍ୟାଣୀ ଚିହିଁକି ଉଠିଥିଲା—'ଏଇ ଧାନକ୍ଷେତ ମଝିରେ ?' ଛଣଘରକୁ ନେଇ ତା'ର କୌଣସି ଆବେଗ ନଥିଲା, କିନ୍ତୁ ବାଦଲ ତା'ର ସ୍ୱପ୍ନନେଇ କଲ୍ୟାଣୀକୁ ଏପରି ନିବିଡ଼ ବନ୍ଧନରେ ବାନ୍ଧିଥିଲା ଯେ ସେ ଦିନସାରା ଦିଗନ୍ତପ୍ରସାରୀ ସବୁଜ ଧାନକ୍ଷେତ ଉପରେ ଲାଲ୍ ଟକଟକ ଶାଢ଼ିଟିଏ ପିନ୍ଧି ଦୌଡ଼ି

ବୁଲିବାରେ ଲାଗିଥିଲା । ନୂତନବଜାର, ପଣ୍ଡିତବାଡ଼ି, ଟାଉନ୍‌ହଲ୍, ସର୍କିଟ ହାଉସ୍ ପାଖରେ ବୁଲିଆସି ରିକ୍‌ସା କଲେଜରୋଡ଼ ଉପରକୁ ଉଠେ । ଗଛରେ ବରଫଳ ପାଚିଥିବା ସମୟରେ ଡାଳ ହଲାଇ ଦେଲେ ଯେପରି ଟପ୍‌ଟପ୍ କରି ପଡ଼େ, ସେହିପରି କିଏ ଯେପରି ହଠାତ୍ ତା'ର ସ୍ମୃତିର ବୃକ୍ଷକୁ ହଲାଇଦେଲା । ତା'ର ମନେପଡ଼ିଯାଏ ସେ ଏହି ରାସ୍ତାର ଉପର ଦେଇ କଲେଜ ଯାଉଥିଲା—ଆନନ୍ଦମୋହନ କଲେଜ । ଲାଲ୍ ଇଟାର ବିଲ୍‌ଡ଼ିଂଟି ବାମପାର୍ଶ୍ୱରେ ଦେଖିବା ମାତ୍ରେ ସେ ରିକ୍‌ସାରୁ ଓହ୍ଲାଇ ପଡ଼ିଲା । ବର୍ତ୍ତମାନ ମଧ୍ୟ କଦମ୍ବ ଗଛଟି ପଡ଼ିଆରେ ଅଛି । ପୁଅ ଝିଅମାନେ ବସିଛନ୍ତି, ଚାଲୁଛନ୍ତି । ସୁନାଖଣି ଖୋଜି ପାଇବା ଭଳି ଆନନ୍ଦ ହୁଏ କଲ୍ୟାଣୀର । ସେ ଲକ୍ଷ୍ୟହୀନ ଭାବରେ ପଡ଼ିଆରେ ବୁଲିବାକୁ ଲାଗେ । କଲେଜର କରିଡ଼ୋର, ପୋଖରୀଘାଟ, ଦୂରରେ ଥିବା ଶିମୁଳି ଗଛଟିକୁ ଖୋଜି ପାଇଲା ନାହିଁ । ମନେ ମନେ ବାଦଲକୁ ଖୋଜେ, କାହାରି କାହାରି ମୁହଁ ବାଦଲର ମୁହଁ ସହିତ ଅନେକ ସାମଞ୍ଜସ୍ୟ ଥିବାପରି ତା'ର ମନେହୁଏ । ଥରେ କରିଡ଼ୋରରେ ଛିଡ଼ାହୋଇ ବାଦଲ ତା' ହାତରେ ଚୁମା ଦେଇଥିଲା । ସେଦିନ କି ଏକ ଅଦ୍ଭୁତ ଶିହରଣ ସେ ଅନୁଭବ କରିଥିଲା । ଦୁଇଦିନକାଳ ସେ ବାମହାତଟିକୁ ପାଣିରେ ଲାଗିବାପାଇଁ ଦେଇ ନଥିଲା । ଯଦି ଧୋଇଯାଏ ! କଲ୍ୟାଣୀ ଲକ୍ଷ୍ୟକରେ ତା'ର ପଛେ ପଛେ ଦଳେ ପିଲା ଆସୁଛନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ସିଟି ମାରୁଛନ୍ତି ତ ପୁଣି କେହି କେହି ଗୀତ ଗାଉଛନ୍ତି— 'ଦେଖା ହ୍ୟାୟ ପହେଲି ବାର ସାଜନ କି ଆଖୋଁ ମେ ପ୍ୟାର୍ ।' କଲ୍ୟାଣୀ ପଛକୁ ବୁଲି ସେମାନଙ୍କ ମଧ୍ୟରୁ ଜଣଙ୍କୁ ପ୍ରଶ୍ନ କରେ—'ତୁମେମାନେ କେଉଁ ଇୟର୍‌ର ଛାତ୍ର ?'

—ଇଣ୍ଟରମିଡ଼ିଏଟ୍ ସେକେଣ୍ଡ ଇୟର୍ ।

—ଜାଣ ମୁଁ ଏହି କଲେଜରେ ପଢ଼ିଛି । ଅନେକ ଦିନ ପୂର୍ବରୁ । ଏପରିକି ତୁମର ଜନ୍ମ ପୂର୍ବରୁ । ବର୍ତ୍ତମାନ କ'ଣ ତଳ ମହଲାରେ ବଙ୍ଗଳା କ୍ଲାସ୍ ହୁଏ ?

—ପିଲାମାନେ ପରସ୍ପର ମୁହଁକୁ ଚାହିଁଲେ । ସେମାନେ ମନେକଲେ ସତେ ଯେପରି ଖୁବ୍ ଏକ ହାସ୍ୟୋଦ୍ଦୀପକ କଥା ଶୁଣୁଛନ୍ତି । ସେମାନଙ୍କର ବୟସ ଅଠର କିମ୍ବା ଊଣେଇଶ ହେବ । ସେମାନଙ୍କ ମଧ୍ୟରୁ ଜଣେ ଅନ୍ୟ ଜଣକୁ ପ୍ରଶ୍ନକରେ—ଆରେ ବଙ୍ଗଳା କ୍ଲାସ୍ କେଉଁଠାରେ ହୁଏ ?

ଯାହାକୁ ପଚାରିଥିଲା, ସେ ହସିହସି କହିଲା—ସାର୍‌ଙ୍କ ବାଂଲୋରେ ।

—ଠିକ୍ କରି କୁହ, ଦୁଷ୍ଟାମି ବନ୍ଦକର ।

—କହିଲୁ ତ ।

—ପଛରୁ ଜଣେ କହିଲା—ଦୋତାଲାରେ ।

—କଲ୍ୟାଣୀ ହସିହସି ପ୍ରଶ୍ନକରେ—ସମ୍ଭବତଃ ତୁମ୍ଭେମାନେ କ୍ଲାସ ଫାଙ୍କିଦେଇ ବୁଲୁଛ ?

ଶୁଣି ହାସ୍ୟରୋଳ ଉଠିଲା । କଲ୍ୟାଣୀର ଛାତି ଫଟାଇ ଏକ ଦୀର୍ଘଶ୍ୱାସ ବାହାରେ । ପଛରୁ ଗୋଟିଏ ପିଲା ଚିତ୍କାର କରି ଉଠିଲା—'ଲ ଯାଇ ଗା' କହି, ସଙ୍ଗେ ସଙ୍ଗେ ଅନ୍ୟ ପିଲାମାନେ ଶବ୍ଦକରି ହସିଉଠିଲେ । କଲ୍ୟାଣୀ ଠିକ୍ ବୁଝିପାରେନା କାହାକୁ ଉଦ୍ଦେଶ୍ୟକରି ଏମାନେ ପାଟି କରୁଛନ୍ତି ? ପାଖଦେଇ ଦଳେ ଝିଅ ଚାଲିଗଲେ, ସେହିମାନଙ୍କ ଉଦ୍ଦେଶ୍ୟରେ କି ? ସେ ଆହୁରି ମଧ୍ଯ ଜାଣିବାକୁ ଚାହୁଁଥିଲା—କେମେଷ୍ଟ୍ରିର ଲାବୋରୋଟାରିଟି ପୂର୍ବ ସ୍ଥାନରେ ଅଛି କି ନାହିଁ ? ବର୍ତ୍ତମାନ ତୁମ୍ଭେମାନେ ଫିଜିକ୍ସରେ କାହା ଲେଖା ବହି ପଢୁଛ ? ଜାଣିବାକୁ ଆଗ୍ରହ କରିଥିଲା—ପୋଖରୀ କଡ଼କୁ ଲାଗି ଯେଉଁ ଶିମୁଳି ଗଛଟି ଥିଲା, ସେଇଟା ନାହିଁ କାହିଁକି ? ଶିମୁଳି କ'ଣ ଫୁଟୁ ନଥିଲା ? ସେ କହିବା ପାଇଁ ଇଚ୍ଛା କରୁଥିଲା—ଜାଣ, ଆମ ସମୟରେ ଝିଅମାନେ ଶିକ୍ଷକଙ୍କ ପଛେ ପଛେ କ୍ଲାସରୁମ୍ ଭିତରକୁ ଯାଉଥିଲେ । କ୍ଲାସ ଶେଷ ହୋଇଗଲେ ଆମ୍ଭେମାନେ କମନ୍‌ରୁମ୍‌ରେ ରହୁଥିଲୁ । ଲୁଚି ଲୁଚି ବୁଲାଚଲା କରୁଥିଲୁ । ଆଉ ବର୍ତ୍ତମାନ ସ୍ୱଚ୍ଛନ୍ଦରେ ଝିଅମାନେ ଏପଟ ସେପଟ ଘୁରି ବୁଲିବାରେ ଲାଗିଛନ୍ତି, ଦେଖିବାକୁ ଭଲ ଲାଗୁଛି । ଆଚ୍ଛା, ପୁଷ୍କରିଣୀରେ କି ପୂର୍ବପରି ସନ୍ତରଣ ଖେଳ ହୁଏନାହିଁ ? ଆମେ କିନ୍ତୁ ଛାତ୍ର ୟୁନିୟନ କରିଛୁ । ଦଳବାନ୍ଧି ଗଣସଙ୍ଗୀତ ଗାଇଛୁ । ଉଇ ଶାଲ୍ ଓଭରକାମ...ତୁମେମାନେ ଗାଅନା ଆମେହିଁ କରିବୁ ଜୟ...ଏହାପରେ ମନେକରାଯାଉ କାରାର ଓଇ ଲୌହକପାଟ ଭେଙ୍ଗେଫେଲେ କରରେ ଲୋପାଟ ? (ବନ୍ଦିଶାଳାର ଏ ଲୁହା କବାଟ ଭାଙ୍ଗି ଫିଙ୍ଗିଦିଅ କରି ଛିନ୍ନଛତ୍ର) ।

କଲ୍ୟାଣୀ ଏହିସବୁ କଥା କହିପାରି ନଥିଲା । କଥାଗୁଡ଼ିକ ଓଠପାଖକୁ ଆଣି ପୁଣି ଗିଳି ଦେଇଥିଲା । ବଡ଼ ଉଦାସ ଭଙ୍ଗୀରେ କଲେଜ ଗେଟ୍ ଅଭିମୁଖେ ସେ ଚାଲିଯାଇଥିଲା । ଜୋଡ଼ାସାଙ୍କୋର ଠାକୁରବାଡ଼ିକୁ ଗଲେ ଯେପରି ବୋଧହୁଏ, ସେ ସେହିପରି ଅନୁଭବ କରୁଥିଲା । ଯେପରି କିଛି ଗୋଟାଏ ନାହିଁ-ନାହିଁର ଭାବ ସର୍ବଦା ଅନୁଭୂତ ହେଉଥିଲା ।

'ଫିତାଚୁଡ଼ି ନେବ, ଫିତାଚୁଡ଼ି', ଗୋଟିଏ କାଚ ବାକ୍ସରେ ଫିତାଚୁଡ଼ି କ୍ଲିପ୍ ସଜାଇ ଫେରିବାଲା ଆଗେ ଚାଲିଯାଏ, ତା' ପଛକୁ ଜିଭରେ ମିଳାଇ ଯିବା ଗୋଲ ଗୋଲ

ଗୋଲାପି ହାୱାଇ ମିଠାଇବାଲା, ବାହାରେ ଗୋଲାପି ମିଠାଇର ଡାକ ଶୁଣିଲେ କଲ୍ୟାଣୀ ଦୌଡ଼ି ଦୌଡ଼ି ଘରୁ ବାହାରି ଆସେ । ରାସ୍ତାରେ ଆଉ ଏହି ହାୱାଇ ମିଠାଇ ବା ଚୁଡ଼ିଫିତା ଫେରିବାଲା ଗୋଟିଏ ହେଲେ ଦୃଷ୍ଟିରେ ପଡ଼ନ୍ତି ନାହିଁ । ସପିଂସେଣ୍ଟର ବଢ଼ିଛି । ଶାଢ଼ି କପଡ଼ା, କସମେଟିକ୍‌ସ, କନ୍‌ଫେକସ୍‌ନାରି ବଢ଼ିଯାଇଛି । ନଦୀକୂଳରେ ଗଢ଼ି ଉଠିଥିବା ଏହି ସ୍ନିଗ୍‌ଧ ସହରଟିର ଅନେକ କିଛି ପରିବର୍ତ୍ତନ ଘଟିଯାଇଛି । ପଣ୍ଡିତବାଡ଼ି, କୋର୍ଟକଚେରି, ସାହେବ କ୍ୱାଟର୍ସ ବୁଲିବା ସମୟରେ କଲ୍ୟାଣୀର ଦୃଷ୍ଟି ଜଜ୍‌ସାହେବଙ୍କ ଆବାସସ୍ଥଳ ଉପରେ ନିବଦ୍ଧ ହୁଏ । ସେ ପିଲାବେଳେ ଏହି କୋଠିକୁ କେତେଥର ଆସିଥିଲା । ସେହି ବହୁଦିନ ପୂର୍ବେ ଏହି କୋଠି ସମ୍ମୁଖରେ ଛିଡ଼ାହୋଇ ଦିନେ ଅନିଲ ମୁଖାର୍ଜୀ କହିଥିଲେ–'ଏଠାରେ ଜଣେ ଜଜ୍‌ସାହେବ ଥିଲେ, ସେ ଏହି କୋଠିର ଦୋତାଲାରେ ବସି ତାଙ୍କର ମାନସସରୋବର ଦେଖୁଥିଲେ । କହିଲୁ ମାନସ ସରୋବରଟା କ'ଣ ?' କଲ୍ୟାଣୀ ଗୁଣୁଗୁଣୁ ହୋଇଥିଲା । ଅନିଲ ମୁଖାର୍ଜୀ କହିଥିଲେ– 'ବ୍ରହ୍ମପୁତ୍ର ।' ଦିନେ ସେହି ଜଜଙ୍କର ଦେଢ଼ବର୍ଷର ଝିଅ ଗୋଟିଏ ଜବାକୁସୁମ ତେଲର ଶିଶି ଭାଙ୍ଗି ଫୋପାଡ଼ିଦେଲା । ଏହା ଦେଖି ଜଜସାହେବ ଏକ କବିତା ଲେଖିଥିଲେ– 'ତେଲ ଶିଶିଟାଏ ଭାଙ୍ଗିଦେଇଛି ବୋଲି ପିଲାଟା ଉପରେ ରାଗୁଛ, ତୁମେମାନେ ଯେଉଁସବୁ ବୃଦ୍ଧ ବ୍ୟକ୍ତି ଭାରତବର୍ଷକୁ ଭାଙ୍ଗି ବିଭକ୍ତ କଲ, ସେତେବେଳକୁ ?' କହିଲୁ ଏହି ଜଜ ସାହେବଙ୍କ ନାମ କ'ଣ ? କଲ୍ୟାଣୀ ପୁନର୍ବାର ଗୁଣୁଗୁଣୁ ହେଲା । ଅନିଲ ମୁଖାର୍ଜୀ କହିଥିଲେ–'ଅନ୍ନଦାଶଙ୍କର ରାୟ । ଦୋତାଲାର ବାରଣ୍ଡାରେ ବସି ଦୁଇଜଣ କେତେ ଆଡ଼ା ମାରିଛୁ, ସେ ଖୁବ୍ ଭଲ ଲୋକ ଥିଲେ ।' କଲ୍ୟାଣୀ ଦୀପେନକୁ ଜଜଙ୍କ କୋଠିର ଦୋତାଲା ଦେଖାଇ ଦେଇ କହିଥିଲା–ଏହିଠାରେ ବସି ଜଣେ ଖୁବ୍ ବଡ଼ ଲେଖକ ଗୋଟିଏ ଛନ୍ଦଗୀତି ଲେଖିଥିଲେ, ସ୍କୁଲର ପ୍ରାଇଜ ଗିଭିଂ ସେରିମନିରେ ପଢ଼ିବା ପାଇଁ ତୁମକୁ ଗୋଟିଏ ଛନ୍ଦଗୀତି ଶିଖାଇଥିଲି, କହିଲି ସେହି ଛନ୍ଦଗୀତିଟି । ଦୀପେନ ଗୁଣୁଗୁଣୁ ହୁଏ ନାହିଁ, ଆଖିବୁଜି ଗାଇଯାଏ– ...ତୁମେ ଯେ ବୃଦ୍ଧଗଣ ଭାରତ ଭାଙ୍ଗି ଭାଗ କଲ, ସେତେବେଳେ ? ଭାରତକୁ ଖଣ୍ଡ ଖଣ୍ଡ କରି ଭାଗ ବାଣ୍ଟିନେଲେ ଦୀପେନର କିଛି ଯାଏଆସେନା ବୋଲି ସେହି ଛନ୍ଦଗୀତିଟି ଆବୃତ୍ତି କରିପାରି ସେ ହସିଉଠିଲା । ଅନ୍ୟ ଦିଗରେ କଲ୍ୟାଣୀର ହୃଦୟ ଫାଟିଯାଏ । ଏହି ହୃଦୟସ୍ପର୍ଶୀ ନିଜସ୍ୱ ସହରଟି କିପରି ପର ପର ମନେ ହେଉଛି । କାହାପାଇଁ ଏହି ସହରଟି ତା'ର ନିଜର ହେଲେ ମଧ୍ୟ ନିଜର ହୋଇ ରହିନାହିଁ । କାହାର ଦୋଷ ଯୋଗୁଁ ସେ ଆଜି ରାସ୍ତାରେ ରାସ୍ତାରେ କଷଟିପଥର ଭଳି କିଛି ଗୋଟାଏ ଖୋଜିବାରେ ଲାଗିଛି ? ଜନ୍ମପରେ ନାଡ଼ି କଟାହୋଇ ମାଟିରେ

ଫୋପଡ଼ା ହୁଏ, ସେ ସେହି ନାଡ଼ି ଖୋଜୁଛି ? ନା ମା' ଛାତିର ବାସ୍ନା ? ଶୋଇବା ଘରର ଝରକା ପାଖରେ ଯେଉଁ କାମିନୀ ଗଛ ଥିଲା, ସେହି କାମିନୀର ବାସ୍ନା ସେ ଖୋଜୁଛି ? କଲ୍ୟାଣୀ ଯେ କ'ଣ ଖୋଜୁଛି ସେ ନିଜେ ହିଁ ବୁଝିପାରେ ନାହିଁ । କଚେରି ରୋଡ଼, ପଣ୍ଡିତବାଡ଼ି, ନୂତନ ବଜାର, ସ୍ୱଦେଶୀ ବଜାର, ମେଛୁଆ ବଜାର, ଷ୍ଟେସନ ରୋଡ଼, ଅମଲାପଡ଼ା, ଆମପଟ୍ଟି, ମହାରାଜା ରୋଡ଼, ପାଟଗୋଦାମ ବୁଲି ବୁଲି ରିକ୍ସାୱାଲା ଚଡ଼ାଗଳାରେ କହିଲା–'ଠିକ୍‌କରି କୁହନା କେଉଁଠାରେ ଓହ୍ଲାଇବ । ଚରିକି ଭଳି ଘୂରିବାକୁ ଲାଗିଲେ ଚଳିବ ନାହିଁ ।' ଛୋଟ ଦିଆସିଲି ଖୋଳପରି ସହର, ଦୁଇଥର ବୁଲିଆସିଲେ ସହରଟି ଶେଷ ହୋଇଯାଏ । ଅଥଚ ଛୋଟ ଥିବା ସମୟରେ ଏହି ସହର ଯେପରି ଶେଷ ହେଉନଥିଲା । ଚାଲି ଚାଲି ଆଣ୍ଠୁବଥା ହୋଇଯାଏ, ଦୀର୍ଘପଥ ଅତିକ୍ରମ କରି ମଧ୍ୟ ଅନେକ କିଛି ଅଦେଖା ରହିଯାଏ । ଶ୍ମଶାନ ଘାଟକୁ ଆସି କଲ୍ୟାଣୀ ରିକ୍ସାକୁ ବିଦା କରିଦିଏ । ଆଗରେ ଶମ୍ଭୁଗଞ୍ଜ ବ୍ରିଜ, କଲ୍ୟାଣୀ କୁହେ–'ଦୀପେନ, ହେଇ ଦେଖ ରେଲବ୍ରିଜ୍, ଗଭୀର ରାତିରେ ଏହି ପୋଲ ଉପରେ ଝମ୍‌ଝମ୍ ଶବ୍ଦକରି ଟ୍ରେନ୍ ଯାଏ । ମା' କହୁଥିଲେ–ବଡ଼ଲାଟ ଗୌରୀପୁର ଜମିଦାରଙ୍କ ଘର ଦେଖିବାକୁ ଯାଉଛନ୍ତି । ଏହା ଶୁଣି ପରିମଳ କହୁଥିଲା–ଦିଦି ଦିଦି ବଲଲାଟ ଦାୟ ଗୌଲିପୁଲେ... ।'

ଦୀପେନ ଶୁଷ୍କ ହସ ହସେ ।

ଏହି ଶ୍ମଶାନରେ ସେମାନଙ୍କୁ ପୋଡ଼ାଯାଇଥିଲା । ହରିନାରାୟଣ ଓ ସରଳାବାଳାଙ୍କ ହତଭାଗ୍ୟ ସନ୍ତାନ କଲ୍ୟାଣୀ, ତିରିଶ ବର୍ଷ ପରେ ସେ ଆସିଛି ଚିତାର ଅଗ୍ନି ଦେଖିବାକୁ, ପୋଡ଼ାକାଠ ଦେଖିବାକୁ । ଚତୁର୍ଦ୍ଦିଗ ଶୂନ୍‌ଶାନ୍ । ଜନମାନବଶୂନ୍ୟ । କେବଳ ଗୋଟାଏ ଦୁଇଟା କୁକୁର ମୋଡ଼ିମାଡ଼ି ହୋଇ ଶୋଇଛନ୍ତି । ବ୍ରହ୍ମପୁତ୍ର ବକ୍ଷରୁ ସୁଲୁସୁଲିଆ ପବନ ବହିଆସୁଛି ।

'ଦୀପେନ, ତୋର ଅଜା ଆଈଙ୍କୁ ଏହି ଶ୍ମଶାନରେ ଦାହ କରାଯାଇଛି । – କଲ୍ୟାଣୀ ତା'ର ପୁଅକୁ ନିକଟକୁ ଟାଣି ଆଣି ଘାସଉଠା ଖାଲଢିପ ଓ ଧୂଳି ଗୋଡ଼ିରେ ପରିପୂର୍ଣ୍ଣ ଜମିଟିକୁ ଦେଖାଇ କହିଥିଲା । ଅଜା-ଆଈ ଦୀପେନ ପାଇଁ କାହାଣୀର ବିଷୟବସ୍ତୁ ଭିନ୍ନ ଅନ୍ୟ କିଛି ନୁହଁ, ଠିକ୍ ରୂପକଥାର ବେଙ୍ଗ-ବେଙ୍ଗୁଲୀ ଭଳି । ତା' ଆଖିରେ ସେପରି ଉତ୍ସୁକତା ନଥିଲା ବରଂ ସାମାନ୍ୟ ଭୟ ପାଇ ସେ କହିଥିଲା–ମା ! ଏଇଟା ପରା ଶ୍ମଶାନ !

କଲ୍ୟାଣୀ ଶ୍ମଶାନକୁ ଆସିବା ପାଇଁ ଅତ୍ୟଧିକ ଭୟ କରେ । ଥରେ ପରିମଳ ବାଜି ରଖି କହିଲା–ଏକା ଏକା ଶ୍ମଶାନକୁ ଯାଇପାରିବୁ ?

କଲ୍ୟାଣୀ ଓଲଟା ପ୍ରଶ୍ନ କରିଥିଲା—ତୁ ପାରିବୁ ?

ପରିମଳକୁ ସେତେବେଳେ ତେରବର୍ଷ । ସେ କହିଲା—ପାରିବି ।

ଠିକ୍ ରାତି ନଅଟା ସମୟରେ କଲ୍ୟାଣୀ କହିଲା—'ବର୍ତ୍ତମାନ ଯା ।' ଶ୍ମଶାନ ଛୁଇଁ ଆସିବୁ । ପାରିଲେ କିଛି ହାଡ଼ଗୋଡ଼ ଆଣିବୁ ।'

ପରିମଳ ସାମାନ୍ୟ ରହିଯାଇ ଦୌଡ଼ିଲା, ହେଲେ ତା' ପାଇଁ ଦୁଶ୍ଚିନ୍ତାରେ କଲ୍ୟାଣୀ ଦେହରୁ ଝାଳ ବାହାରି ପଡ଼ିଲା । କାହାରିକୁ କିଛି ନଜଣାଇ ଏକା ଏକା ସେହି ରାତିରେ ପରିମଳକୁ ଫେରାଇ ଆଣିବା ପାଇଁ ସେ ବାହାରି ଯାଇଥିଲା । ଏକାକୀ ଶ୍ମଶାନ ଅଭିମୁଖେ ଅନ୍ଧକାର ମଧ୍ୟରେ ଦୌଡ଼ିଲା । ନିସ୍ତବ୍ଧ ଶ୍ମଶାନରେ ଛିଡ଼ାହୋଇ 'ପରିମଳ ପରିମଳ' ବୋଲି ସେ ଡାକିବାକୁ ଲାଗିଲା । ଘନ ଅନ୍ଧକାର ମଧ୍ୟରେ ତା'ର ଶରୀର ଲୁଚି ଯାଇଥିଲା । ସେ ମନେ ମନେ ଭାବିଲା, ଶ୍ମଶାନରେ ଭୂତ ବୋଧହୁଏ ପରିମଳକୁ ଟାଣିନେଇ ପାଣିରେ ବୁଡ଼ାଇଦେଇଛି । ଆଖିରୁ ଲୁହ ପୋଛି ପୋଛି ସେ ଘରକୁ ଫେରିଲା । ଫେରିଆସି ଦେଖେ ସରଳାବାଳାଙ୍କ କୋଳରେ ବସି ପରିମଳ ଗୁଡ଼ ତିଆରି ସନ୍ଦେଶ ଖାଇବାରେ ଲାଗିଛି, ସେ କୁଆଡ଼େ ଧୀରେ ଧୀରେ ଯାଇ ଛାତ ଉପରେ ଶୋଇଥିଲା, ସେ ଘରୁ ଆଦୌ ଗୋଡ଼କାଢ଼ି ନଥିଲା ।

ସେହି ରାତିଭଳି ଉର୍ଦ୍ଧ୍ୱଶ୍ୱାସରେ କଲ୍ୟାଣୀ କାଳିବାଡ଼ିସ୍ଥ ତା'ର ଘର ଅଭିମୁଖେ ଦୌଡ଼ିଯାଏ । ଯେପରି କି ବର୍ତ୍ତମାନ ସିଏ ଘରକୁ ଗଲେ ହିଁ ସରଳାବାଳାଙ୍କୁ ଭେଟିବ, ତାଙ୍କ କୋଳରେ ବସିଥିବା ପରିମଳକୁ ଦେଖିବ । ଯେପରି ଘରକୁ ଗଲେ ସେ ଦେଖିବାକୁ ପାଇବ ଜ୍ୟୋତିପ୍ରକାଶ ଛାତରେ ଛିଡ଼ାହୋଇ ନକ୍ଷତ୍ର ଗଣୁଛି । ତଳ ମହଲାର ବୈଠକ ଘରେ ରେକ୍ସିନ ବନ୍ଧା ବହିରେ ହରିନାରାୟଣ ମୁହଁଗୁଞ୍ଜି ବସିଛନ୍ତି । କଲ୍ୟାଣୀ ଦ୍ରୁତ ଗତିରେ ଦୌଡ଼େ । ସନ୍ଧ୍ୟାପରେ ଯେଉଁ ଝିଅ ଘର ପଛରେ ଥିବା ବାଉଁଶବୁଦା ନିକଟକୁ ଯାଏ ନାହିଁ, ଅନ୍ଧାର କିଟିକିଟି ଶିଆଳ-ଭୁକା ରାତିରେ ଭୂତପ୍ରେତର ଭୟ ଭୁଲି ସେହି ଝିଅ କାହା ପାଇଁ ଦୌଡ଼ିଥିଲା ? ବର୍ତ୍ତମାନ ସେ କାହାପାଇଁ ଦୌଡୁଛି ? ଦୌଡ଼ିଲେ କ'ଣ ସବୁ ଠିକ୍ ଠିକ୍ ମିଳିଯାଏ ? ଝଙ୍କାଳିଆ କାମିନୀ ଫୁଲର ଗଛ, ରୋଷେଇଘର ପଛରେ କାଗଜିଲେମ୍ବୁ ? ଦଳବାନ୍ଧି ରୁମାଲଚୋରି ଖେଳ ? ମା'ଙ୍କ ବୁକୁର ପବିତ୍ର ଆଘ୍ରାଣ ?

ଚାଲୁଚାଲୁ ହଠାତ୍ ତା'ର ଦୃଷ୍ଟି ନିବଦ୍ଧ ହୁଏ ଯୋଡ଼ାସିଂହ ଉପରେ । ତାଙ୍କ ଘରର ଉତ୍ତର ଦିଗରେ ଥିଲା ଅନିଲ ମୁଖାର୍ଜୀଙ୍କ ଘର । ସେହି ଘରର ଗେଟ୍‌ରେ ଯୋଡ଼ିଏ ସିଂହର ମୂର୍ତ୍ତି ଥିଲା । ସେହି ଘର, ସେହି ସିଂହଥିବା ଘରଟି ପୂର୍ବପରି ରହିଛି । ଦୁଇ ପାଖକୁ

ଦୁଇଟି ବୃତ୍ତାକାର ଘର, ଅନିଲ ମୁଖାର୍ଜୀ କହୁଥିଲେ—'ଏହି ଘର ତାଙ୍କ ଅଜାଙ୍କର । ଏହିଠାରେ ବସି ସେ ବାଈଜି ନାଚ ଦେଖୁଥିଲେ । କଲିକତାରୁ ବାଈଜି ଆସୁଥିଲେ ।' ଘରଟିର ସଦର ଦରଜା ସମ୍ପୂର୍ଣ୍ଣଭାବେ ମେଲା ରହିଥିଲା, କଲ୍ୟାଣୀ ଗେଟ୍ ପାର ହୋଇ, ଖୋଲା ଦରଜାଦେଇ ଘର ଭିତରକୁ ପଶିଗଲା ଯେପରି ଏହି ଘର ଭିତରେ ସେ ତା'ର ଅନିଲ କକାଙ୍କୁ ପାଇଯିବ । ରାଶି ରାଶି ବହି ଭିତରେ ସର୍ବଦା ମଜ୍ଜି ଯାଇଥିବା ଧୋତି ଫତୁଆ ପିନ୍ଧା ସେହି ସରଳ ମଣିଷଟି । ଘରେ ସ୍ତୂପାକାରରେ ବହି ଥିଲା । ବିଛଣାରେ, ଟେବୁଲ, ଚେୟାର, ମେଜ, ଶୀତଳପଟି ଉପରେ ବହି ପଡ଼ିରହିଥାଏ । ଏତେଗୁଡ଼ାଏ ବହି ଦେଖି କଲ୍ୟାଣୀ କହୁଥିଲା—'ଆପଣ ଏତେସବୁ ବହି ପଢୁଛନ୍ତି, ମୁଣ୍ଡ ବିନ୍ଧେନାହିଁ ?' ଅନିଲ ମୁଖାର୍ଜୀ କହୁଥିଲେ—'ବହି ନପଢ଼ିଲେ ବରଂ ମୁଣ୍ଡ ବିନ୍ଧେ ।' ମଝିରେ ମଝିରେ ଅପରାହ୍ଣ ସମୟରେ ସେ ତାକୁ ସାହେବ କ୍ୱାର୍ଟର ଆଡ଼େ ବୁଲାଇ ନିଅନ୍ତି । ଜଜସାହେବଙ୍କ କୋଠିର ଦକ୍ଷିଣ ଦିଗରେ ନଳିନୀ ସରକାରଙ୍କ ଘର । ଘର ନିକଟରେ ଏକ କୃଷ୍ଣଚୂଡ଼ା ଗଛ, ତା'ରି ତଳେ ବସି ଅନିଲକକା ତାକୁ ସମ୍ପୂର୍ଣ୍ଣ ଆଇମା'ଙ୍କ କାହାଣୀ ଶୁଣାଇଥିଲେ । ଦୀପେନ ଜୟିଷାଙ୍କୁ ଗଳ୍ପ ଶୁଣାଇବା ପାଇଁ କଲ୍ୟାଣୀକୁ ଆଉ ଦକ୍ଷିଣାରଞ୍ଜନ ପଢ଼ିବାକୁ ହୋଇନି । କଲ୍ୟାଣୀ ଯେଉଁ ଘରଟିରେ ଆସି ଛିଡ଼ାହେଲା ସେହି ଘରଟି ବଡ଼ ବଡ଼ ସୋଫା, ବଡ଼ ଖଟ, ଆଲଣା, ଟେଲିଭିଜନ, ଭିସିଆର୍, ଫୁଲଦାନି, ପ୍ଲାଷ୍ଟିକ ଫୁଲର ତୋଡ଼ାରେ ଭରିଯାଇଥିଲା । ସେ ବୁଲି ବୁଲି ବହି ଖୋଜୁଥିବା ସମୟରେ ତା'ର ବିସ୍ମିତ ଦୃଷ୍ଟି ସାମ୍ନାରେ ଗୋଟିଏ ଏକୋଇଶ ବାଇଶ ବର୍ଷର ଝିଅଟିଏ ଆସି ଛିଡ଼ାହୁଏ ।

କଲ୍ୟାଣୀ ପଚାରିଲା—ଏଇଟା ଅନିଲ ମୁଖାର୍ଜୀଙ୍କ ଘର ନା ?

ଝିଅଟି କହିଲା—ନା' ତ ।

—ସେମାନେ କେଉଁଠାରେ ?

—ଶୁଣିଛି, ଏହି ଘରଟି ଯାହାଙ୍କର ଥିଲା ସେ ମରିଯିବା ପରେ ତାଙ୍କ ପୁଅମାନେ ଘର ବିକ୍ରିକରି ଇଣ୍ଡିଆ ଚାଲିଯାଇଛନ୍ତି । ଆପଣ ?

—ମୁଁ କଲିକତାରୁ ଆସିଛି । ଆଗରେ ଯେଉଁ ଘରବାଡ଼ି ଦେଖୁଛ ସେ ସବୁ ଆମରି ଜାଗା ଥିଲା । ସତରଗୁଣ୍ଠ ଜମି ଉପରେ ଆମର ଘର ଥିଲା ।

ଝିଅଟି କୌତୂହଳୀ ଦୃଷ୍ଟିନେଇ ପ୍ରଶ୍ନକଲା—ସମ୍ଭବତଃ ନିଜର ଘରବାଡ଼ି ଦେଖିବା ପାଇଁ ଆସିଛନ୍ତି ?

କଲ୍ୟାଣୀ ଦୀର୍ଘଶ୍ୱାସ ପକାଇ କହିଲା—ହଁ ।

—ବସନ୍ତୁ ବସନ୍ତୁ କହି ଝିଅଟି କଲ୍ୟାଣୀ ନିକଟକୁ ଖଣ୍ଡିଏ ଚେୟାର ବଢ଼େଇଦେଲା । ଦୀପେନର ଚିବୁକ ହଲାଇ ଦେଇ କହିଲା—ପିଲାଟି ଆପଣଙ୍କ ପୁଅ ନା ? ତୁମର ନାମ କ'ଣ ବାବା ?

—ତା'ର ନାମ ଦୀପେନ ।

—ବାଃ ଖୁବ୍ ସୁନ୍ଦର ନାମ ତ । ତୁମେ କେଉଁ ଶ୍ରେଣୀରେ ପଢୁଛ ?

—ସିକ୍ସ କ୍ଲାସ୍‌ରେ ପଢ଼େ ।

—ଆପଣ କେଉଁଠାରେ ରହୁଛନ୍ତି ? ଝିଅଟି ପୁଣି ଥରେ ପ୍ରଶ୍ନକଲା ।

—ମୋର ବାଲ୍ୟକାଳର ଜଣେ ବାନ୍ଧବୀ ଅଛନ୍ତି, ତାଙ୍କରି ଘରେ । ତାଙ୍କର ଘର ସମ୍ପୂର୍ଣ୍ଣଭାବେ ଆମ ଘରକୁ ଲାଗିକରି ଥିଲା ।

—ତା'ହେଲେ ତ ଖୁବ୍ ନିକଟରେ, ନା ?

—ସେ ବର୍ତ୍ତମାନ ନଓମହଲରେ ରୁହେ ।

—ଆପଣଙ୍କୁ ଏକା ଏକା ବୁଲାବୁଲି କରିବାରେ କିଛି ଅସୁବିଧା ହେଉନାହିଁ ?

—କାହିଁକି ? ଏହି ସହରର ସମସ୍ତ ସ୍ଥାନ ସହିତ ମୁଁ ପରିଚିତ ।

—ଓ, ସତେ ତ । ତେବେ ମୟମନସିଂହ ସେପରି କିଛି ଡେଭଲପ୍ କରିନି । ଆପଣ ଯଦି ଢାକା ଆଉ ଚଟ୍ଟୋଗ୍ରାମ ଦେଖିବେ, ଭଲଲାଗିବ ।

—ମୁଁ କ'ଣ ଆଉ ଡେଭଲପ୍‌ମେଣ୍ଟ ଦେଖିବାକୁ ଆସିଛି ? ମୁଁ ପୂର୍ବର ସେହି...

—ଚା' ଖାଇବେ ନା କ'ଣ ? ପିଲାଟିର ମୁହଁ ଶୁଖିଯାଇଛି ।

—ଆମପଟ୍ଟିର ସୁଧୀର ଘୋଷ ମିଷ୍ଟାନ୍ନ ଭଣ୍ଡାରରୁ ଲୁଚି, ହାଲୁଆ ଖାଇଛୁ । ଦହି ଆଉ ମଲାଇଚପ୍‌ର ସ୍ୱାଦ ପୂର୍ବପରି ରହିଛି ।

—ସ୍ୱାଦ କିପରି ଥିଲା ତା' ମଧ୍ୟ ଆପଣଙ୍କର ମନେଅଛି ? ଝିଅଟିର ଆଖିରେ ସରଳ କୌତୁକ ଭରିଗଲା ।

କଲ୍ୟାଣୀ ମୁହଁରେ ବିଷଣ୍ଣ ହସ । ଝିଅଟି ଘର ଭିତରୁ ଦୁଇଟି ତାଟିଆରେ ପାୟସ ସହିତ ଦୁଇଗ୍ଲାସ ପଇଡ଼ପାଣି ଧରି ଆସିଲା । ଦୁଇଜଣଙ୍କ ହାତକୁ ପାୟସ ତାଟିଆ

ବଢ଼ାଇଦେଇ କହିଲା—ମୋର ନାମ ନୀପା । ମୁମିନୁନିସା କଲେଜରେ ବି.ଏ. ପଢ଼େ । ଆଗରେ ମୋର ପରୀକ୍ଷା । ଏଠାରେ କ'ଣ କ'ଣ ଦେଖିଲେ ? ବୁଲି ବୁଲି ଦେଖିଛନ୍ତି ତ ! ଏଗ୍ରିକଲଚର ୟୁନିଭରସିଟିକୁ ଯାଇଛନ୍ତି ? ଝିଅମାନଙ୍କର କ୍ୟାଡ଼େଟ୍ କଲେଜ ଦେଖିଛନ୍ତି ନା ନାହିଁ ? ଅବଶ୍ୟ ମୟମନସିଂହରେ ବିଶେଷ କିଛି ଦେଖିବାର ନାହିଁ । ନୂଆ ବ୍ରିଜ୍ ହୋଇଛି, ସେଇଟିକୁ ଦେଖିପାରନ୍ତି ।

କଲ୍ୟାଣୀ ପଇଡ଼ପାଣି ପିଇ ପରମ ତୃପ୍ତି ଲାଭକଲା । ଯେଉଁଦିନ ଗଛ କଟା ହେଉଥିଲା, କଅଁଳ ପଇଡ଼ରେ ଘର ପୂରିଯାଏ । ବାରଣ୍ଡାରେ ପଇଡ଼ ସ୍ତୂପାକାରରେ ରଖାଯାଏ । କଲ୍ୟାଣୀ ପଇଡ଼ର ଶସ ଖାଇବାକୁ ଖୁବ୍ ପସନ୍ଦ କରେ । ସେ ଲୁଚାଇ ଲୁଚାଇ ପଇଡ଼ ପାଣି ଢାଳିଦେଇ ଚାମଚରେ ଶସ ବାହାର କରି ଖାଏ । ପାଖ ପଡ଼ୋଶୀଙ୍କୁ ବାଣ୍ଟି ଦେବା ପରେ ମଧ ପଇଡ଼ ସରେ ନାହିଁ । ଖଟତଳେ ନଡ଼ିଆ ଖୁନ୍ଦି ହୋଇ ରୁହେ । ଶୁଖିଲା ନଡ଼ିଆ କୋରି ପର୍ବପର୍ବାଣିରେ ଖୁବ୍ ସୁସ୍ୱାଦୁ ଲଡୁ ସରଳାବାଲା ତିଆରି କରନ୍ତି ।

ନୀପା ପ୍ରଶ୍ନ କରେ—କିଛି ଦିନ ରହୁଛନ୍ତି ତ ?

କଲ୍ୟାଣୀ ହଠାତ୍ ବୁଝିପାରିଲା ନାହିଁ ଏହାର କି ଉତ୍ତର ଦେବ । ସେ କ୍ଳାନ୍ତ ଦୃଷ୍ଟିରେ ଖୋଲା ଦୁଆରର ଅପରପାର୍ଶ୍ୱରେ ଅଳ୍ପ ଘାସ ଥିବା ସ୍ଥାନଟି ଆଡ଼କୁ ଚାହିଁ ରହିଥିଲା । ଘାସ ଉଠିଯାଇଥିବା ମାଟିରେ ଯେଉଁ ଅଣଓସାର ରାସ୍ତାଟି ଦେଖାଯାଉଥିଲା, ତାହାରି ଦିଗକୁ ।

ଆଶା ଆଉ ଆଶଙ୍କାରେ ତା'ର କଣ୍ଠଟି ଥରିଉଠେ ଆଉ ତ କିଛିନାହିଁ, କେବଳ ଗଛଟିଏ ଅଛି । ଆଚ୍ଛା, ସେମାନ ଯଦି ଗଛଟି କାଟି ଦିଅନ୍ତି ? ତୁମେ କ'ଣ କୁହାବୋଲା କରି ଅଟକାଇ ରଖିପାରିବ ନାହିଁ ? କହିବ ପୁରୁଣା ଗଛଟା, ଅନ୍ତତଃ ରହିଥାଉ । ଏହାଛଡ଼ା ଜାମୁ ତ ହେଉଛି । ପୂର୍ବରୁ ଏହି ଗଛର ଜାମୁ କେତେ ଲୋକ ଯେ ଖାଉଥିଲେ ! ପଡ଼ାର ପିଲାମାନେ ଗୋଟେଇ ନେଇଯାଉଥିଲେ । ଆମ୍ଭେମାନେ ଟିଣଥାଳିରେ ଜାମୁସହ ଲୁଣ, ଲଙ୍କାଗୁଣ୍ଡ ମିଶାଇ ଅନ୍ୟ ଏକ ଥାଳି ଢାଙ୍କି ଖୁବ୍ ଜୋର୍‌ରେ ହଲାଉଥିଲୁ । ଜାମୁଗୁଡ଼ିକ ନରମ ହୋଇ ଭର୍ତାପରି ହୋଇଯାଉଥିଲା ।

ବର୍ତ୍ତମାନ ତ ଆଉ ଏହା ଆପଣଙ୍କର ହୋଇ ନାହିଁ ? ନୀପା ହସି ହସି କହିଲା—କାଟି ପକାଇଲେ କ୍ଷତି ବା କ'ଣ ?

—ତଥାପି ଆମରି ତ ଥିଲା । କାଟିଲେ କଷ୍ଟ ହେବ ନାହିଁ ?

—ଆପଣ କ'ଣ ଅନେକ ଦିନ ହେବ କଲିକତାରେ ?

—ହଁ, ତିରିଶ ବର୍ଷ ହୋଇଗଲା ।

—ତିରିଶ ବର୍ଷ ପରେ ମଧ୍ୟ ଗଛ କଥା ମନେରଖିଛନ୍ତି ? ନୀପା ଖିଲିଖିଲି କରି ହସିଉଠେ ।

କଲ୍ୟାଣୀ ମୁହଁରେ ମଳିନ ହସ । ଉଠି ବାରଣ୍ଡାକୁ ଗଲା । କାନ୍ଥରେ ହାତ ବୁଲାଇ କହିଲା—'ଅନିଲକକାଙ୍କ ଏହି ଘରକୁ ମୁଁ ବହୁବାର ଆସିଛି । ତାଙ୍କ କଥା ଖୁବ୍ ମନେପଡୁଛି । ଖୁବ୍ ଭଲଲୋକ ଥିଲେ ।' କହୁ କହୁ କଲ୍ୟାଣୀର ଚକ୍ଷୁରେ ଲୋତକ ପୂର୍ଣ୍ଣ ହୋଇଯାଏ ।

ସେ ତାଙ୍କ ଘର ଦିଗକୁ ଚାଲେ, କଳା ରଙ୍ଗର ଗେଟ୍‌ଟି ନାହିଁ, ଗେଟ୍ ଉପରେ ମାଧବୀଲତାର ଫୁଲ ଫୁଟି ରହୁଥିଲା, କାହାର ନିଷ୍ଠୁର ଆଙ୍ଗୁଳି ସେସବୁ ଟାଣି ଛିଡ଼ାଇ ଦେଇଛି ! ଘରଟିର ଚୂନ ଟୁକୁରାରୁ ଖଣ୍ଡିଏ ଯଦି ମିଳିଯାନ୍ତା—ଚଟାଣରେ ସୁନାମୁଖୀ ଛୁଞ୍ଚିଟିଏ ପଡ଼ିଗଲେ ଲୋକେ ଯେପରି ଖୋଜନ୍ତି, କଲ୍ୟାଣୀ ସେହିପରି ଗଭୀର ମନୋନିବେଶ ପୂର୍ବର ଅନ୍ଧିସନ୍ଧି ଦୂବଘାସ ଭିତରେ କିଛି ଖୋଜୁଥିଲା । ଦେଖୁଥିଲା ଶାଗୁଆନ କାଠର ବଡ଼ ପଲଙ୍କ, ସିନ୍ଦୁକ, ଟେବୁଲ, ଚେୟାର, ମେହଗାନି କାଠର ଆଲମାରି, ଝାଡ଼ବତି—ଏ ସମସ୍ତର କୌଣସି ଚିହ୍ନ କେଉଁଠାରେ ହେଲେ ମିଳିବ କି ନାହିଁ । ଦୋତାଲା ଝରକା ପାଖକୁ ଲାଗି କଲ୍ୟାଣୀର ଶୋଇବା ଘରଟି ଥିଲା, ଏହି ଘର ମଧ୍ୟକୁ ଦିନତମାମ ବ୍ରହ୍ମପୁତ୍ରର ଉତ୍ତାଳ ପବନ ବହୁଥିଲା । ଦୋତାଲାର ବାଲକୋନିରେ ଛିଡ଼ାହୋଇ ଅପରପାର୍ଶ୍ୱ ଦେଖାଯାଉନଥିବା ତରଙ୍ଗାୟିତ ଜଳରାଶି ଦିଗକୁ ବିଭୋର ଦୃଷ୍ଟିରେ ସେ ଚାହିଁରହୁଥିଲା । ନୌକାକରି ସେପାରିରୁ ଭାଗୀରଥିର ମା' ସକାଳେ କ୍ଷୀର ଘେନି ଆସୁଥିଲା । କ୍ଷୀର ଉପରେ କଦଳୀପତ୍ର ଢଙ୍କା ରହୁଥିଲା । ରାତିରେ ଦୁଧଭାତ ଖାଇବାକୁ ଦେଇ ସରଳାବାଳା ନାନାବାୟା ଗୀତ ଗାଉଥିଲେ—'ନଦୀର ତଟେ ଯାଆନା ଭାଇ ସେଠାରେ ମାଦଳ ରୁହେ, ତିନି ମଣିଷଙ୍କ ମୁଣ୍ଡ କାଟି ପାଦରେ କଥା କୁହେ ।' ରାତିରେ ମାଦଳ ଭୟରେ ନିଦ ଭାଙ୍ଗିଯାଏ । ପରଦିନ ସକାଳେ ସୂର୍ଯ୍ୟ ଉଇଁଲେ ଆଉ କୌଣସି ଭୟ ନଥାଏ । ଅପରାହ୍ଣ ହେଲେ ସେମାନେ ପଡ଼ିଆରେ ପାଟିତୁଣ୍ଡ କରି ଖେଳୁଥିଲେ କିମ୍ବା ନଦୀକୂଳରେ ଦୌଡ଼ୁଥିଲେ । ଥରେ କଲ୍ୟାଣୀ ଅନିଲକକାଙ୍କୁ ପଚାରିଥିଲା—'ମାଦଳ ଦେଖିବାକୁ କିପରି ?' ସେ ତତ୍‌କ୍ଷଣାତ୍ ଚଟାଣ ଉପରେ ଦୁଇହାତ ରଖି ପାଦ ଦୁଇଟିକୁ ଉପରକୁ ଉଠାଇ ମୁଣ୍ଡକୁ ଛାତିରେ ଗୁଞ୍ଜି ଏପରି ଏକ ଅଦ୍ଭୁତ ଆକୃତି ଧାରଣ କଲେ ଯେ ସତରେ କଲ୍ୟାଣୀ ଭୟ ପାଇଯାଇଥିଲା । ଚିନ୍ତାକଲେ ବର୍ତ୍ତମାନ ମଧ୍ୟ ତା ଦେହ ଭୟରେ ଥରିଉଠେ ।

ଏହି ଅସଂରକ୍ଷିତ ପଡ଼ିଆ ମଝିରେ ଯଦିଓ ସେହି ଘରଟିର ଆଉ କୌଣସି ଚିହ୍ନବର୍ଣ୍ଣ ନାହିଁ, କଲ୍ୟାଣୀ ପାଦରୁ ଜୋତା ଖୋଲି ଚାଲିଲା । ପଡ଼ିଆସାରା ଗୋଟିଏ ବାର-ତେର ବର୍ଷ ବୟସର ଝିଅ ବେଣୀ ଝୁଲାଇ ଦୌଡ଼ିବାପରି ଅନୁଭବ କରୁଥିଲା । ଝିଅଟିକୁ ସେ ଛୁଇଁବାକୁ ଚାହେଁ; ମାତ୍ର ଛୁଇଁପାରେ ନାହିଁ । ସେ ଯେପରି ନିଜେ ହିଁ ନିଜର ସ୍ଥିତି ହରାଇବସେ । ପୂର୍ବେ ଏହି ପଡ଼ିଆରେ ଛିଡ଼ା ହେଉଥିଲେ ବ୍ରହ୍ମପୁତ୍ରର ପବନ ଆସି ଦେହ ଥରାଇ ଯାଉଥିଲା, ଏବେ ତାହା ସ୍ପର୍ଶ ମଧ କରୁନାହିଁ । ପବନ ଆସିବ କୁଆଡୁ ? ସରୁ ଏକ ସୂତାପରି ନଇ, କଲ୍ୟାଣୀ ବିଶ୍ୱାସ କରିପାରୁନାହିଁ ସେହି ନାଳଟି ତା'ର ପ୍ରିୟ ବ୍ରହ୍ମପୁତ୍ର ! ତା'ର ମନେହୁଏ ସମସ୍ତେ ମିଥ୍ୟା କହୁଛନ୍ତି, ବ୍ରହ୍ମପୁତ୍ର ଏତେ ନିଃସ୍ୱ ହୋଇପାରେନା ! ପରିପୂର୍ଣ୍ଣ ଏକ ନଦୀକୁ ଲୋକମାନେ ପାଦରେ ଚାଲି ଚାଲି ପାର ହେଉଛନ୍ତି । ନଦୀ ଉପରେ ଧାନକ୍ଷେତ, ପରିବାକ୍ଷେତ—ତା' କ'ଣ ନଦୀ ନା ଅନ୍ୟ କିଛି ?

ଘରଟିର ପଛପଟରେ ଚାରିଦିଗକୁ ଘେରି ରହିଥିବା ଏକ ଟିଣଛପର ଘର ଥିଲା । ଟିଣର ଚାଳ ଉପରେ ବର୍ଷା ପଡ଼ିଲେ କି ଚମତ୍କାର ଶବ୍ଦ ସୃଷ୍ଟି ହେଉଥିଲା । କଲିକତାରେ ଟାଇଲ ଛପର ଉପରେ କ'ଣ ସେହି ରିମ୍‌ଝିମ୍ ଶବ୍ଦ ଶୁଣିବାକୁ ମିଳେ ! ପୋଖରୀ ପାଖ ଦେଇ ଗୋଟିଏ ସରୁ ରାସ୍ତା ପଡ଼ିଥିଲା, ସେହି ରାସ୍ତାରେ ରୁଖସାନାଙ୍କ ଘରକୁ ଯିବାଆସିବା କରି ହେଉଥିଲା । ଦିନେ ମଧ୍ୟାହ୍ନରେ ଚତୁର୍ଦ୍ଦିଗ ଅନ୍ଧକାର କରି ଆକାଶରେ ମେଘ ଘୋଟିଗଲା, ଗୁଡୁମ୍ ଗୁଡୁମ୍ ଶବ୍ଦ, ଶୀତଳ ପବନ ତୀରପରି ଦେହରେ ଗଳିଯାଉଥିଲା—ସେତିକିବେଳେ ସେହି ରାସ୍ତାରେ ପାଦ ଚିପିଚିପି ଆସି ରୁଖସାନା କହିଲା—'ଚାଲ ଯିବା, ଆମ୍ବ ଝଡ଼ିପଡୁଛି ।' ତାଙ୍କ ଘର ଅଗଣାରେ ଛଅଟି ଖଟାମିଠା ଆମ୍ବଗଛ ଥିଲା । କାଠଚମ୍ପା ଗଛ ତଳଦେଇ ରୁଖସାନା ସହ କଲ୍ୟାଣୀ ଦୌଡ଼ି ଦୌଡ଼ି ଯାଉଥିବା ସମୟରେ ସରଳାବାଳା ପଛରୁ ଡାକି କହିଥିଲେ—'ଗଛରୁ ଡାଳ ଭାଙ୍ଗି ମୁଣ୍ଡରେ ପଡ଼ିବ କଲ୍ୟାଣୀ, ଯାଆ ନାହିଁ ।' ଝଡ଼ପବନରେ ଗଛଗୁଡ଼ିକ ଏପରି ଜୋର୍‌ରେ ଦୋହଲୁଥିଲେ ଯେ, ଘରର କବାଟ ଝିଡ଼ିକି ଆଦି ବନ୍ଦକରି ସମସ୍ତେ ଥଣ୍ଡାରେ ଥରୁଥିଲେ । ରୁଖସାନାଙ୍କ ଅଗଣାକୁ ସେ ଦୌଡ଼ି ଦୌଡ଼ି ଚାଲିଯାଇଥିଲା । କୁଆପଥରରେ ତାଙ୍କର ଅଗଣାଟି ଧଳା ଦିଶୁଥିଲା, ଆକାଶରେ ଚକ୍‌ଚକ୍ କରି ବିଜୁଳି ଚମକୁଥିଲା । ଆଉ ସେଇ ବିଜୁଳି ଆଲୁଅରେ ଦୁଇଜଣ ଦୁଇ ହାତରେ ଆମ୍ବ ଗୋଟାଇବାରେ ଲାଗିପଡ଼ିଥିଲେ । ଝଡ଼ ଏବେ ବି ହୁଏ, ଏବେ ବି କ'ଣ ଆଗପରି ବାଳିକାମାନେ ଫ୍ରକ୍ ଭର୍ତ୍ତିକରି ଝଡ଼ିପଡ଼ିଥିବା ଆମ୍ବ ଗୋଟାନ୍ତି ? ରୁଖସାନାଙ୍କ ଗଛରେ ବଡ଼ ବଡ଼ ପିଜୁଳି ହେଉଥିଲା, ପିଜୁଳି ଗଛରେ ଚଢ଼ି ସେମାନେ ଗୋଡ଼ ହଲାଇ ହଲାଇ ପିଜୁଳି ଖାଉଥିଲେ ଓ ଗପ କରୁଥିଲେ । ତା'ର ସାନ ଦୁଇଭାଇ

ତଳେ ଛିଡ଼ାହୋଇ ରହୁଥିଲେ, ସେମାନଙ୍କୁ ମଧ୍ୟ ପିଜୁଳି ତୋଳି ଦେଉଥିଲେ । ରୁଖସାନାଙ୍କ ମା' ରୁଗ୍‌ଣା ଥିଲେ, ସେ ଦିନତମାମ ଶୋଇ ରହୁଥିଲେ । ଘରର ଲୋକମାନେ କହୁଥିଲେ–'ଜୀନ୍‌ର ପବନ ଲାଗିଛି ।' କଲ୍ୟାଣୀ ଆଉ ରୁଖସାନାଙ୍କୁ ଗଛରେ ଚଢ଼ିବାର ଦେଖି ମା' କଅଁଳ ସ୍ୱରରେ କହୁଥିଲେ–'ଝିଅପିଲାମାନେ ଗଛ ଚଢ଼ିଲେ ଗଛ କିନ୍ତୁ ମରିଯାଏ ।' ରୁଖସାନା ଓଲଟି କୁହେ–'ପାଉଁଶ ମରେ ।' କଲ୍ୟାଣୀ ଆଖିଆଗରେ ସେହି ପ୍ରଗଲ୍‌ଭା ରୁଖସାନାର ବାହାଘର ହୋଇଗଲା, ସେହି ସମୟରେ ସେ ବିଦ୍ୟାମୟୀ ସ୍କୁଲର ଅଷ୍ଟମ ଶ୍ରେଣୀରେ ପଢୁଥିଲା, ତାକୁ ସ୍କୁଲରୁ ନାମ କଟାଇ ଆଣି ଘରେ ବସାଇ ରଖାଗଲା, ତା'ପରେ ଦିନେ ଅଚିହ୍ନା ଅଜଣା ଜଣେ ବୃଦ୍ଧଙ୍କ ସହିତ ଜବରଦସ୍ତ ବାହା ଦେଇଦେଲେ । ବାହାଘର ଦିନ ମଧ୍ୟ ସେ ସାମାନ୍ୟ କାନ୍ଦି ନଥିଲା । କଲ୍ୟାଣୀ କାନରେ ଚୁପ୍‌ଚୁପ୍ କହିଥିଲା–'ଦେଖିବୁ, କାଲି ପୁଣି ମୁଁ ପଳାଇ ଆସିବି ।' କଲ୍ୟାଣୀ ଅପେକ୍ଷା କରିଥିଲା, ହେଲେ ରୁଖସାନା ଆସିନଥିଲା । ଦୁଇବର୍ଷ ପରେ ଶାଢ଼ି ପିନ୍ଧି, ମୁଣ୍ଡରେ ଓଢ଼ଣା ଦେଇ କୋଳରେ ପିଲାଟିଏ ଧରି ସେ ଯେତେବେଳେ ଆସି କଲ୍ୟାଣୀ ଆଗରେ ଛିଡ଼ାହେଲା, କଲ୍ୟାଣୀ ପ୍ରଥମେ ଚିହ୍ନିପାରିଲା ନାହିଁ ଯେ ସେ ରୁଖସାନା । ଅନେକ ପରିମାଣରେ ନିଜକୁ ସେ ରୁଖସାନା ପରି ମନେକରେ–ସେ ମଧ୍ୟ କହିଯାଇଥିଲା ଫେରିଆସିବା ପାଇଁ; କିନ୍ତୁ ଆସିନଥିଲା । ରୁଖସାନା ପରି ସେ ମଧ୍ୟ ବର୍ଷ ପରେ ବର୍ଷ ଅତିବାହିତ କରି ଫେରିଛି । ରୁଖସାନାକୁ ଯେପରି ଚିହ୍ନିହେଉ ନଥିଲା, କଲ୍ୟାଣୀକୁ ବୋଧହୁଏ ସେପରି ଚିହ୍ନି ହେଉନାହିଁ ।

କଲ୍ୟାଣୀ ନିଜେ ହିଁ ଜାଣିପାରେ ନାହିଁ ହଠାତ୍ ତା' ଭିତରେ ଶୈଶବ-କୈଶୋର ଏତେ ତୀବ୍ର ଭାବରେ ଜାଗିଉଠେ ଯେ ସେ ମାଟିରେ ନଇଁପଡ଼େ । ଏହା ହେଉଛି ତା'ର ନିଜର ମାଟି, ଏହି ମାଟିରେ ଦୀର୍ଘଦିନ ଧରି ତା'ର ପଦଚିହ୍ନ ଲାଗିରହିଛି, ପଡ଼ିଆର ଦକ୍ଷିଣ ଦିଗରେ ଜାମୁଗଛଠାରୁ ଦୁଇହାତ ଦୂରରେ କଲ୍ୟାଣୀ ମାଟିରୁ ସେହି ବାସ୍ନା ପାଉଛି । ସେ ମାଟିର ବାସ୍ନା ଆହରଣ କରିବାକୁ ଯାଇ ନଇଁ ପଡୁ ପଡୁ ମାଟିରେ ବସିପଡ଼ି ମାଟିକୁ ହିଁ ଦୁଇ ହାତରେ ଚାପି ଧରେ । କଳା କଳା ଜାମୁକୋଳି ଛେଚି ହୋଇ ଘାସ ଉପରେ ପଡ଼ିରହିଛି । ପଡ଼ାର ଲୋକମାନେ ଏହି ଗଛରୁ କେତେ ଯେ ଜାମୁକୋଳି ଗୋଟାଇ ନିଅନ୍ତି, ନିମଗଛର ଡାଳ ଭାଙ୍ଗିନେଇ ଯାଆନ୍ତି, କଲ୍ୟାଣୀ ବି ଶରିଫାଙ୍କ ବେଲଗଛରୁ ପୂଜାପାଇଁ ବେଲପତ୍ର ଆଣୁଥିଲା । ଜଣେ ଦୁଇଜଣ ମନ୍ଥର ଗତିରେ ହୁଏତ ଯାଉଥିଲେ । କଲ୍ୟାଣୀର ନଇଁପଡ଼ିଥିବା ଶରୀର ନିକଟରେ ଆସି ଛିଡ଼ାହୁଅନ୍ତି–ସେମାନଙ୍କର ଦୃଷ୍ଟିରେ ଉତ୍କଣ୍ଠା ଓ ସନ୍ଦିଗ୍ଧ ଭାବ । କିଏ ହସେ ତ କିଏ ଅନ୍ୟ କାହାରିଠାରୁ ପଚାରି ବୁଝିବାକୁ

ଚାହେଁ ଏଥିରେ କି ରହସ୍ୟ ରହିଛି ! କଲ୍ୟାଣୀ କ'ଣ ବର୍ତ୍ତମାନ ଏଠାରେ ଏକ ଉଦ୍ଭଟ ବସ୍ତୁ ! ହରିନାରାୟଣ ରାୟଙ୍କର ଝିଅ ସେ । ଲୋକେ କହୁଥିଲେ ରାୟବାବୁ ଅଛି ବୋଲି ସହରରେ ବିଚାର ଅଛି । ରାୟବାବୁଙ୍କୁ ମନେ ରଖିବାପାଇଁ ସହରରେ କେହି ଜଣେ ହେଲେ ବସିରହିନାହିଁ । କଲ୍ୟାଣୀକୁ ବି କେହି ଚିହ୍ନନ୍ତି ନାହିଁ ବର୍ତ୍ତମାନ ।

କିଏ ସେଠାରେ ? ସେଠାରେ କିଏ ? –ଦୋତାଲାର ଝର୍କା ପାଖରୁ ଜଣେ କିଏ କର୍କଶ କଣ୍ଠରେ ଚିତ୍କାର କରିଉଠେ । ଲୋକଟି ଖାଲି ଦେହରେ ଲୁଙ୍ଗି ପିନ୍ଧି ତଳକୁ ଓହ୍ଲାଇଆସି ପ୍ରଶ୍ନକରେ–କ'ଣ ଚାହଁ ? ସେତେବେଳେ କଲ୍ୟାଣୀ ତା'ର ସାଆନ୍ତବାପା ପୋତିଥିବା ସେହି ଜାମୁଗଛଟିକୁ ଜାବୁଡ଼ିଧରି ଅତି ବିକଳରେ କାନ୍ଦିଉଠେ । ଲୋକ ଗହଳି ଯେତେ ଅଧିକ ଅଧିକ ବଢ଼ିବାରେ ଲାଗିଥାଏ, କଲ୍ୟାଣୀର ହୃଦୟଫଟା କାନ୍ଦଣା ମଧ୍ୟ ବଢ଼ିବାରେ ଲାଗିଥାଏ । ସେ ନିଜେ ମଧ୍ୟ ବୁଝିପାରେ ନାହିଁ ସେ କାହିଁକି କାନ୍ଦୁଛି । କେବଳ ମାତ୍ର ତା'ର ମନେହେଉଥିଲା ସେ ଏହି ମାଟିର ମଣିଷ । ସରଳାବାଳା ନାମରେ ତା'ର କୌଣସି ମା' ନଥିଲେ, ଅଠଚାଳିଶ ବର୍ଷ ପୂର୍ବେ ସେ ଏହି ମାଟି ଫଟାଇ ଜନ୍ମଲାଭ କରିଥିଲା । ସେ ନାହିଁ ବୋଲି ପୂର୍ବପରି ଗଛନାହିଁ, ଗଛରେ ସବୁଜିମା ନାହିଁ, ସେ ନାହିଁ ବୋଲି ବ୍ରହ୍ମପୁତ୍ରରେ ଜଳ ମଧ୍ୟ ନାହିଁ । ଛିଡ଼ା ହୋଇଥିବା ଲୋକମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଥିଲେ–ସ୍ତ୍ରୀ ଲୋକଟି କିଏ ? କାନ୍ଦୁଛି କାହିଁକି ?

କେହି ଜଣେ କହିଲା–ଆଉ ଦିନେ ଆସିଥିଲା, ହିନ୍ଦୁ ।

ଏହା ଶୁଣି ଆଉ ଜଣେ କହିଲା–ହିନ୍ଦୁଝିଅ ଏଠାକୁ ଆସି କାନ୍ଦୁଛି କାହିଁକି ?

ଜଣେ ନିମ୍ନ ସ୍ୱରରେ କହିଲା–ଇଣ୍ଡିଆରୁ ଆସିଛି, ଏହିଠାରେ ତା'ର ଘରଦ୍ୱାର ଥିଲା ।

–ଏଠାରେ ଥିଲା ? ଏଠାରେ କେବେ ଘର ଥିଲା ? ବ୍ରିଟିଶ ଅମଳରେ ?

–କେଜାଣି, କିଏ ଜାଣେ ?

–ପାଗଳୀ ନା କ'ଣ ?

–ସେକଥା ବା କିଏ ଜାଣେ ?

–ବୋଧହୁଏ ପୂର୍ବରୁ ଏଠାରେ ହିନ୍ଦୁଘର ଥିଲା ?

–ସେହିକଥା ତ କହୁଛି ।

—ଥିଲେ ଥିବ । କେତେ ଲୋକଙ୍କର ତ ଥିଲା । ଏଥିପାଇଁ କ'ଣ କାନ୍ଦିବାକୁ ହୁଏ ? ମୁସଲମାନମାନେ କ'ଣ ସବୁକିଛି ଛାଡ଼ିଦେଇ ଇଣ୍ଡିଆରୁ ଆସିନାହାନ୍ତି ? ବର୍ତ୍ତମାନ ସେମାନେ ସେଗୁଡ଼ିକୁ ଦଖଲ କରିବା ପାଇଁ ଯାଉଛନ୍ତି ନା କ'ଣ ?

—କାଦେର ଆଦି ଜମିଦାରି ଛାଡ଼ିଦେଇ ଚାଲି ଆସିଲେ ନାହିଁ ? ଗାଙ୍ଗିନା କୂଳରେ ସୁନାଦୋକାନ ଦେଇଛନ୍ତି, କ୍ୟାଲକାଟା ମୁସଲିମ ଜୁୟେଲାର୍ସ ।

—ସମ୍ଭବତଃ ବୋଧହୁଏ ମାୟାରେ କାନ୍ଦୁଛି । ବୟସ ହୋଇଯାଇଛି । ବାପ ମା'ଙ୍କ କଥା ମନେପଡୁଛି । ଚେକ୍ ଲୁଙ୍ଗି ପିନ୍ଧିଥିବା ଯୁବକଟିଏ ଗଛକୁ ଉରାଦେଇ କହିଲା ।

ସମସ୍ତ ସଂଳାପକୁ ଚପାଇ ଦେଇ ଜଣେ ଭାରିଗଳାରେ କହିଲା—ଯେତେସବୁ ଫାଜଲାମି, ଇଣ୍ଡିଆରେ ରହିବାକୁ ଇଚ୍ଛା ପୁଣି ଏ ଦେଶରୁ ନିଜର ଭାଗଟା ନେବାକୁ ମଧ୍ୟ ଇଚ୍ଛା ।

ବୁଢ଼ାପରି ଜଣେ ଲୋକ ନିକଟକୁ ଆସି କହିଲା—ମା' ତୁମର ନାମ କ'ଣ ? ବାପାଙ୍କ ନାମ କ'ଣ ? କେତେ ଦୂରରୁ ଆସିଛ ମା', କାହାଘରେ ରହୁଛ ? କେଉଁଠାରେ ଖାଇବା ପିଇବା କରୁଛ ? ଏଠାରେ ଏସବୁ କ'ଣ ଆରମ୍ଭ ହୋଇଛି, ଏମାନେ ତ ମଣିଷ ନୁହନ୍ତି, ସବୁ ଅମଣିଷ ହୋଇଯାଇଛନ୍ତି । ସବୁ ଅମଣିଷ । ଘରବାଡ଼ି ନଥାଉ ମା' ଜଣେ ଦୁଇଜଣ ଭଲମଣିଷ ଏବେ ବି ଦେଶରେ ଅଛନ୍ତି । ତାହା ହୋଇନଥିଲେ ଦେଶ କିପରି ତିଷ୍ଠି ରହିଛି, କୁହ ତ ! ଉଠ ଉଠ । କାନ୍ଦନାହିଁ ମା' । କାନ୍ଦିବ କାହିଁକି ? କାନ୍ଦିବାରେ କ'ଣ ବା ଲାଭ ହେଲା । ଯେଉଁମାନେ ତୁମକୁ ଏସବୁ କଥା କହିଲେ ସେମାନେ କ'ଣ କିଛି ଚିନ୍ତାକରି କହିଛନ୍ତି ? ମୁହଁକୁ ଯାହା ଆସିଲା କହି ପକାଇଲେ । ଦୋଷ ଧରନାହିଁ ମା' ।

ଏହାପରେ ଦୀପେନ ଭିଡ଼ ଠେଲି ଗଛମୂଳରେ ଲୋଟିପଡ଼ି କାନ୍ଦୁଥିବା କଲ୍ୟାଣୀ ନିକଟରେ ଆସି ଛିଡ଼ାହେଲା । ଚକ୍ଷୁରେ ତା'ର ବିସ୍ମୟ ଭରି ରହିଥିଲା, ସେ ବୁଝିପାରୁନଥିଲା କାହିଁକି ତା'ର ମା' ଗୋଟିଏ ଗଛକୁ ଧରି କାନ୍ଦୁଛି, ଆଉ ଲୋକମାନେ ଗହଳିକରି ତାହା ଦେଖୁଛନ୍ତି ? ଦୀପେନ ତା' ମା'ର ହାତଧରି ଟାଣେ—ମା' ଚାଲ ।

ଇନ୍ଦ୍ରନାଥ ରାୟଙ୍କ ପୁତ୍ର ସତୀନାଥ ରାୟ, ତାଙ୍କର ପୁତ୍ର ସତ୍ୟେନ୍ଦ୍ରନାଥ ରାୟ, ତାଙ୍କର ପୁତ୍ର ହରିନାରାୟଣ ରାୟ, ଆଉ ହରିନାରାୟଣ ରାୟଙ୍କ ଜୀବନରୁ ବିଚ୍ଛିନ୍ନ ହୋଇଯାଇଥିବା କଲ୍ୟାଣୀ ଆଜି ତା'ର ଜନ୍ମମାଟିକୁ ସଙ୍ଖୋଳିବା ପାଇଁ ଆସିଛି । ସେ ଏହି ମାଟି ଭେଦକରି ଜନ୍ମ ନେଇଛି । କୌଣସି ନାରୀର ଗର୍ଭରୁ ସେ ଜନ୍ମ ନେଇ ନାହିଁ ।

ଏହି ଗଛଭଳି ସେ ଏକାକୀ । ନିଃସଙ୍ଗ । ଆଉ କେହି ନଚିହ୍ନନ୍ତୁ ପଛେ ଗଛଟି ନିଶ୍ଚୟ ଚିହ୍ନିପାରିଛି, ଗଛ ତ ଆଉ ମଣିଷ ଭଳି ନିଷ୍ଠୁର ନୁହେଁ । କଲ୍ୟାଣୀ ତା'ର କାନ୍ଦ ବନ୍ଦ କରିପାରେ ନାହିଁ, ସେ ଦୀପେନର ହାତଧରି ଅନେକଙ୍କ ତୀକ୍ଷ୍ଣଦୃଷ୍ଟି ସାମ୍ନାରେ ଆଖିର ଲୁହ ଆଖିରେ ରଖି ରାସ୍ତାକୁ ଚାଲିଆସେ ।

କଲ୍ୟାଣୀ ଦ୍ରୁତଗତିରେ ଚାଲିବାକୁ ଲାଗେ । ହାତରେ ଦୃଢ଼ଭାବରେ ଦୀପେନକୁ ଧରିଥାଏ । କେତେ ପଥ ସେ ଅତିକ୍ରମ କରିଛି ନିଜେ ଖିଆଲ କରିନାହିଁ, ହଠାତ୍ ପଛରୁ 'ଦିଦି ଦିଦି' ଡାକ ଶୁଣି ସ୍ଥିର ହୋଇ ଛିଡ଼ାହୋଇ ରହେ । ତାକୁ କ'ଣ କିଏ ଡାକୁଛି ! କିଏ ଡାକିବ, ଏଇ ସହରରେ ତାକୁ ଦିଦି ବୋଲି ଡାକିବା ପାଇଁ ତ କେହି ନାହିଁ । ପୁଣି ଚାଲିବାକୁ ଆରମ୍ଭକରେ, ପୁଣି ସେହି ଦିଦି ଡାକ । ପରିମଳ ପରି ମନେହୁଏ, ହେଲେ ସେ ଏଠାରେ କିପରି ଆସିବ ? ସେ ତ ସେହି ନାକତଳାରେ, ଆସିବା ପୂର୍ବରୁ କଲ୍ୟାଣୀ ତାକୁ ସାଥିରେ ଆସିବା ପାଇଁ କହିଥିଲା—'ଚାଲ ଯିବା ।' ପରିମଳ କହିଥିଲା—'ତୁମେ ଯାଅ, ମୋତେ ପୁଣି ବମ୍ବେ ଯିବାକୁ ହେବ ।' ତେବେ କିଏ ଡାକେ, ହ୍ୟାଲୁସିନେଶନ ନୁହେଁ ତ ? ଅଡ଼ିଟାରି ହ୍ୟାଲୁସିନେଶନ ? ତଥାପି ପଛକୁ ଚାହିଁଦେଖେ କଲ୍ୟାଣୀ, ଗୋଟିଏ ଯୁବକ ଦୌଡ଼ି ଦୌଡ଼ି ତାରି ଆଡ଼କୁ ଆସୁଅଛି । ପରିମଳ ନୁହେଁ, ଚିହ୍ନା ମଧ୍ୟ କେହି ନୁହେଁ । କିଏ ତେବେ ? ସେହି ପଡ଼ିଆରେ ଭିଡ଼ ଜମାଇଥିବା ଲୋକଙ୍କ ମଧ୍ୟରୁ ଜଣେ କେହି ? ତାକୁ ଭୟ ଭୟ ଲାଗେ, ଦ୍ରୁତବେଗରେ ପାଦଚଳାଏ, ଦୀପେନକୁ ଟାଣି କୁହେ— 'ଚାଲ ଦୀପେନ ।' ଦୀପେନ ନଯାଇ ଛିଡ଼ାହୋଇଯାଏ, କୁହେ—'ମା, ତୁମକୁ ଡାକୁଛି ।'

—ଆରେ ନା । ମୋତେ ଏଠାରେ କିଏ ଡାକିବ ?

—ଛିଡ଼ାହୁଅ । ତୁମକୁ ହିଁ ଡାକୁଛି ।

ଇତିମଧ୍ୟରେ ଯୁବକଟି ଦୌଡ଼ିଆସି ଆଗରେ ଛିଡ଼ାହୁଏ । ଯୁବକଟି ଯଦିଓ କଲ୍ୟାଣୀକୁ ଦିଦି ବୋଲି ବୋଲି ସମ୍ବୋଧନ କରୁଛି, ତାକୁ ତ ସେ ଚିହ୍ନେନାହିଁ । ଯୁବକଟି ଧଇଁସଇଁ ହୋଇ ଦୀର୍ଘଶ୍ୱାସ ନେଉଥିଲା, କହିଲା—ଆପଣ କ'ଣ କଲ୍ୟାଣୀ ଦିଦି ?

କଲ୍ୟାଣୀ ହତବାକ୍ । କିଏ ତାକୁ ଚିହ୍ନିଛି ଏ ବିଦେଶ ଭୂମିରେ ! ସେ ଯେ କଲ୍ୟାଣୀ, ଏହା କହିବା ପାଇଁ ପ୍ରଥମେ ସେ ଚାହିଁନଥିଲା । ଦ୍ୱିଧା ଓ ଆଶଙ୍କା ତା'ର ଜିଭକୁ ଚାପି ଧରିଥିଲା । ଯୁବକଟିର ଦୁଇ ଆଖିରେ ସ୍ନିଗ୍ଧତା ଓ କମନୀୟ ଭାବ ଦେଖି କଲ୍ୟାଣୀ କହିଲା—ହଁ ।

—ମୋର ନାମ ସ୍ୱପନ ।

—ସ୍ୱପନ ? କେଉଁ ସ୍ୱପନ ?

—ରୁଖସାନାର ଭାଇ । ଆପଣଙ୍କ ଘର ପଛପଟରେ ତ ଆମର ଘରଥିଲା ! ମନେ ନାହିଁ ?

—ହଁ ହଁ, ମନେ ରହିବ ନାହିଁ କାହିଁକି !

—ମୁଁ ଭିଡ଼ ଦେଖି ପଚାରି ବୁଝିଲି କ'ଣ ହୋଇଛି, ଏଠାରେ ଭିଡ଼ କାହିଁକି ? ଲୋକମାନେ କହିଲେ ଏହି ସ୍ଥାନରେ ତାଙ୍କର ଘର ଥିଲା, ଇଣ୍ଡିଆରୁ ଆସିଥିବା ସ୍ତ୍ରୀ ଲୋକ । ତାପରେ ଦୂରରେ ଦେଖିବାକୁ ପାଇଲି ଆପଣ ଚାଲିଯାଉଛନ୍ତି । ମୁଁ ତ ଜାଣେ ଏଠାରେ କାହାର ଘର ଥିଲା, ତେଣୁ ଆପଣଙ୍କୁ ଡାକିଲି ।

—ତୁମେମାନେ କ'ଣ ସେହି ଘରେ ଅଛ ?

—ହଁ, ପୂର୍ବରୁ ଥିବା ଘରେ । ଆସନ୍ତୁ ଆସନ୍ତୁ, ଆମଘରକୁ ଆସନ୍ତୁ ।

—ତୁମର ବଡ଼ଭାଇ ସେଲିମ କେଉଁଠାରେ ?

—ତା'ର ନାମ ମନେଅଛି ? ସ୍ୱପନ ଶିଶୁଟିଏ ପରି ହସିଉଠେ ।

କଲ୍ୟାଣୀ ମଧ୍ୟ ହସେ । ସ୍ୱପନର କଥା ତ ତା'ର ମନେପଡ଼େନାହିଁ । ସେଇ ଅତି ଛୋଟ ପିଲାଟି, ପିଜୁଳି ଗଛମୂଳରେ ଛିଡ଼ାହୋଇ ରହୁଥିଲା, କେତେବେଳେ ଦିଦିମାନେ ଗଛରୁ ଛିଡ଼ାଇ ପିଜୁଳିଟିଏ ଦେବେ ଏହି ଆଶାରେ । ବର୍ତ୍ତମାନ ସେ କେତେ ବଡ଼ ହୋଇଯାଇଛି ! ଉଚ୍ଚରେ କଲ୍ୟାଣୀକୁ ଟପିଯାଇଛି । ସ୍ୱପନ ସହ ଚାଲୁଥିବା ସମୟରେ ପୁଣିଥରେ ତାକୁ ଭାବିବାକୁ ଭଲଲାଗେ ଏଇ ଯେଉଁ ସହର, ଏଇଟି ତା'ର, ଏଇ ଆଗରେ ଯେଉଁ ସବୁ ଘରବାଡ଼ି—ଏହାସବୁ ତା'ର, ତାହାରି ପୂର୍ବପୁରୁଷଙ୍କ ଭିଟାମାଟି । ଦୀର୍ଘ ତିରିଶ ବର୍ଷକାଳ ନଦେଖି ମଧ୍ୟ ତା'ର ପଡ଼ୋଶୀ ତାକୁ ଦିଦି ବୋଲି ସମ୍ବୋଧନ କରିଛି । ଏହାଠାରୁ କ'ଣ ଆଉ ସେ ଅଧିକ ଆଶା କରେ ! ପୋଖରୀ କଡ଼ ଦେଇ ଚାଲିଗଲେ ରୁଖସାନାର ଘର ପଡ଼େ । ଆଉ ବର୍ତ୍ତମାନ ବୁଲି ବୁଲି ଛୋଟ ଏକ ଗଳି ଭିତରେ ପଶି ଏଘର ସେଘରରେ ଦେହ ଘଷି ହୋଇ ତାକୁ ସେହି ଘରେ ପହଞ୍ଚିବାକୁ ହେଲା । ଘରଟିର କୌଣସି ପଦାର୍ଥ ସେ ଚିହ୍ନିପାରିଲା ନାହିଁ । ଅଗଣାର ପିଜୁଳି ଗଛଟି ନାହିଁ, ଆମ୍ବଗଛଗୁଡ଼ିକ ନାହିଁ, ସେହି ଟିଣ ଛପର ଘରଟି ଅନ୍ତର୍ଦ୍ଧାନ ହୋଇ ତା' ସ୍ଥାନରେ ଗୋଟିଏ ତିନିତାଲା ଘର ଠିଆ ହୋଇଛି । ସ୍ୱପନ କହିଲା—ଉପରକୁ ଆସନ୍ତୁ, ଆମେ ଉପରେ ରହୁ, ତଳତାଲାଟି ଭଡ଼ାରେ ଦିଆଯାଇଛି ।

ଦୋତାଲାକୁ ଉଠି ସେ ବଡ଼ପାଟିରେ ଡାକେ—କାହିଁ ଲିପି, କେଉଁଠି ଅଛ, ଦେଖ କିଏ ଆସିଛନ୍ତି । କଲ୍ୟାଣୀକୁ ଦେଖିବାପାଇଁ ଲିପି ଏବଂ ଗୋଟିଏ ଛଅ ବର୍ଷର କୌତୁକିଆ ପିଲା ଧାଇଁଆସିଲେ ।

—ବସନ୍ତୁ ଦିଦି, ଏମାନେ ଆପଣଙ୍କ ବିଷୟରେ କାହାଣୀ ଶୁଣିଛନ୍ତି ।

—ମୋ ବିଷୟରେ ?

—ହଁ, ଆପଣ ଆଉ ରୁଖସାନା ଅପା କିପରି ଦକ୍ଷ ଗଛଚଢ଼ାଳୀ ଥିଲେ, ସେହିସବୁ । ମନେଅଛି ଆମର ଟିଣ ଚାଳରେ ଆମ୍ବଡ଼ା ପଡ଼ିବାର ଶବ୍ଦ ହେଉଥିଲା ଆଉ ଆପଣ କହୁଥିଲେ ଯେ ଆପଣଙ୍କର ଗୋଟିଏ ପୋଷାଭୂତ ଅଛି, ସେହି ଭୂତ କୁହେ ପିଲାମାନେ ଯେପରି ଶୋଇପଡ଼ ନ ଶୋଇଲେ ସେ ପିଲାମାନଙ୍କୁ ମୁଣିରେ ପୂରାଇ ଭୂତଦେଶକୁ ନେଇଯିବ । ପିଲାମାନେ ଶୋଇପଡ଼ନ୍ତି, ମୁଁ ଆଖିବୁଜି ଶୁଣିଛି ଆପଣ ଆଉ ରୁଖସାନା ଅପା ହସିବାରେ ଲାଗିଥାନ୍ତି । ଦିନ ବଦଳିଯାଇଛି ଦିଦି, ଆଜିକାଲିର ପିଲାମାନେ ଭୂତଗପ ଶୁଣି ଆଉ ଭୟ କରୁନାହାନ୍ତି ।

—ରୁଖସାନା କେଉଁଠି ରହୁଛି ?

—ନରସିଂଦି ।

—ତା'ର ଯେପରି କେଉଁଠାରେ ବାହାଘର ହୋଇଥିଲା, ଜାମାଲପୁର...ନା କେଉଁଠି ?

—ହଁ, ଜାମାଲପୁର ମଧ୍ୟରେ । ଶେରପୁର । ସେ ବାହାଘର ତ ଭାଙ୍ଗିଗଲା, ଜୋଇଁ ତାଲାକ ଦେଇଦେଲେ । ପରେ ପୁଣି ନରସିନ୍ଦିଠାରେ ବାହାଘର ହେଲା । ଏ ଜୋଇଁ ମଧ୍ୟ ଭଲନୁହେଁ ଦିଦି, ମାରଧର କରନ୍ତି ।

—କ'ଣ କହୁଛ, ରୁଖସାନାକୁ ମାରେ, ସେ ଚାଲିଆସୁନାହିଁ କାହିଁକି ?

—ଏତେଗୁଡ଼ାଏ ପିଲାଛୁଆ ଧରି କେଉଁଠାକୁ ଚାଲିଆସିବ ? ବାପା ମା' ନାହାନ୍ତି । ଆସିଲେ ଭାଇମାନଙ୍କ ସଂସାର ଭିତରେ ରହିବାକୁ ହେବ । ମୋର ଆପତ୍ତି ନାହିଁ ଦିଦି, ମୁଁ ଠିକ୍ ତା'ର ଦାୟିତ୍ୱ ନେବି, ଅନ୍ୟ ଭାଇମାନେ ହୁଏତ ନେବେ ନାହିଁ, କିନ୍ତୁ ସେ ବୋଧହୁଏ କାହାରି ସଂସାରରେ ବୋଝ ହେବାକୁ ଚାହେନାହିଁ ।

କଲ୍ୟାଣୀର ମନେପଡ଼ିଯାଏ ରୁଖସାନାର ପିଲାଦିନର ସେଇ ଟୋ-ଟୋ ବୁଲା ସ୍ୱଭାବ । ଏ ଗଛରୁ ବରକୋଳି ତୋଳିବା, ସେ ଘରକୁ ଖେଳିବାକୁ ଯିବା । କଲ୍ୟାଣୀର

ଖେଳିବା ପାଇଁ କଣ୍ଢେଇ ଥିଲା । ରୁଖସାନା କହୁଥିଲା—'ଏଗୁଡ଼ାକ ପକାଇ ଦେ, ଚାଲ ଦଉଡ଼ିବନ୍ଧା ଖେଳ ଖେଳିବା ।' ରୁଖସାନା ପଡ଼ିଆକୁ ପସନ୍ଦ କରୁଥିଲା । ବଡ଼ ପଡ଼ିଆରେ ହାତଗୋଡ଼ ମେଲାଇ ଖେଳିବାକୁ ଚାହୁଁଥିଲା । ପୋଖରୀରେ ପଶିଲେ ସେ ଗୋଟିଏ ବୁଡ଼ରେ ଅନ୍ୟ କୂଳକୁ ଚାଲିଯାଏ । କଲ୍ୟାଣୀ ଓ ଅନ୍ୟମାନେ ଘାଟରେ ବସି କରତାଳି ମାରନ୍ତି । ଝିଅଟି ବର୍ତ୍ତମାନ ମାଡ଼ ଖାଏ, ତାକୁ ଘରୁ ବାହାରିବା ପାଇଁ ଦିଆଯାଏ ନାହିଁ । ସେ କିପରି ଏସବୁ ସହିଯାଉଛି ? କଲ୍ୟାଣୀ ଜାଣେ ରୁଖସାନା ବେଶି ଲେଖାପଢ଼ା କରିନାହିଁ, ଚାକିରି ବାକିରି କରି ଯେ ନିଜର ଇଚ୍ଛାନୁଯାୟୀ ଚଳିବ, ତାହା ମଧ୍ୟ ନୁହେଁ । କାହା ଜୀବନ ଯେ ଶେଷପର୍ଯ୍ୟନ୍ତ ଯାଇ କେଉଁଠାରେ ରୁହେ, ଆଗରୁ ନିର୍ଣ୍ଣୟ କରାଯାଇ ପାରେନା । କଲ୍ୟାଣୀର ମଧ୍ୟ ହୁଏତ ଲେଖାପଢ଼ା ହୋଇପାରିନଥାନ୍ତା । ନନୀଗୋପାଳ ଯଦି ଜାଣିପାରିଥାନ୍ତେ ଯେ ହରିନାରାୟଣ ଆଉ କଲିକତା ଆସିବେ ନାହିଁ ତେବେ ହୁଏତ ସେ କଲ୍ୟାଣୀକୁ କଲେଜ ପଢ଼ିବାର ଖର୍ଚ୍ଚ ଦେଇ ନଥାନ୍ତେ ।

ଲିପି ଝିଅଟି ଦେଖିବାକୁ ଡଉଲଡାଉଲ ସୁନ୍ଦରୀ । ସେ କହିଲା—ଦିଦି, କ'ଣ ଖାଇବେ କୁହନ୍ତୁ ।

—ନା, କିଛି ଖାଇବି ନାହିଁ । ଭୋକ ହେଉନାହିଁ ।

—ଭୋକ ହେଉନାହିଁ କାହିଁକି ? ସମୟ କ'ଣ କମ୍ ହେଲା ?

—ସମୟ ପାଇଁ ନୁହଁ । ପ୍ରକୃତରେ ଖାଇବାପାଇଁ ଇଚ୍ଛା ହେଉ ନାହିଁ । କଲିକତାରେ ମଧ୍ୟାହ୍ନ ଭୋଜନ କରୁ କରୁ ଅପରାହ୍ଣ ହୋଇଯାଏ । ଏହା ମୋର ଅଭ୍ୟାସରେ ପଡ଼ିଯାଇଛି ।

—ଏହା କ'ଣ ଗୋଟାଏ କଥା ଯେ ଖାଇବେ ନାହିଁ । ଆମ ଘରକୁ ଆସି କେହି ନଖାଇ ଯାଆନ୍ତି ନାହିଁ । କଲିକତାରେ କ'ଣ କରନ୍ତି, ସେଇଟା କଲିକତାର ବ୍ୟାପାର । ଆମେ ସବୁ ମଇମନସିଂହର ମଣିଷ, ଏଠାରେ ଆମ୍ଭମାନଙ୍କର ନିୟମ ମାନି ଚଳିବାକୁ ପଡ଼ିବ ।

—ତୁମେ ହିଁ କେବଳ ମୟମନସିଂହର ମଣିଷ ? ମୁଁ ନୁହେଁ ?

—ହଁ, ସତେ ତ । ଆପଣ ମଧ୍ୟ । ଲିପି ଶବ୍ଦକରି ହସିଉଠେ ।

କଲ୍ୟାଣୀ ଘରଦ୍ୱାର ଦେଖିବାକୁ ଲାଗେ । ବାରଣ୍ଡାରେ ଛିଡ଼ାହେଲେ ଝରକାର ଫାଙ୍କ ଦେଇ ଦୃଷ୍ଟି ନିଜର ଭିଟାମାଟି ଦିଗକୁ ସ୍ୱତଃ ଚାଲିଯାଏ । ହରିନାରାୟଣଙ୍କର ଭିଟାକୁ

ଅଧିକାର କରି କାନ୍ଥ ଉଠିଛି । ସେହିସବୁ କାନ୍ଥର ହଳଦୀ ରଙ୍ଗର ପିଠିକୁ କଲ୍ୟାଣୀ ଦେଖେ । ଏହା ଦେଖି ଅନ୍ତରରେ ନିରାଶ ଭାବ ଭରିଯାଏ, ତୃଷାର୍ତ୍ତ ଅନୁଭବ କରେ ।

ସ୍ୱପନ ଆଉ ଲିପିର ଛୋଟ ସଂସାର ମଧ୍ୟକୁ ସେ ବୁଲିଆସିବ, ଏପ୍ରକାର କୌଣସି ପରିକଳ୍ପନା ତା' ମନରେ ନଥିଲା । ଅଥଚ ସ୍ୱପନ ତାକୁ ରାସ୍ତାରୁ ଧରିଆଣିଛି । ଯାହାର ତାକୁ ମନେରଖିବାର କଥା ନୁହେଁ, ସେ ହିଁ ତାକୁ ମନେରଖିଛି, ସ୍ତ୍ରୀ ଓ ପୁଅଝିଅଙ୍କ ନିକଟରେ ଗପ କରିଛି । ଏପରି ଅପ୍ରତ୍ୟାଶିତ ଆତିଥ୍ୟ କଲ୍ୟାଣୀକୁ ଭାବମଗ୍ନ କରିପକାଏ । ସେ ଚିନ୍ତାକରେ କଲିକତାରେ କ'ଣ ଏପରି ଘଟଣା କେବେ ଘଟିପାରେ ଯେ ରାସ୍ତାରୁ ଧରିନେଇ ଘରେ ବସାଇବା, ହୃଦୟର ଆବେଗ ନେଇ ଖାଇବା ପାଇଁ ଅନୁରୋଧ କରିବା ? ଏ ଦେଶ ଭିନ୍ନ ଅନ୍ୟ କେଉଁଠାରେ ତା' କ'ଣ ସମ୍ଭବ ହୋଇପାରେ !

—ଦିଦି, ଏ ମୋର ପୁଅ । ପ୍ରି-କ୍ୟାଡ଼େଟ୍‌ରେ ପଢୁଛି ।

—ପ୍ରି-କ୍ୟାଡ଼େଟ୍ କେଉଁଠାରେ କୁହ ତ ? ଏହି ନାମରେ କୌଣସି ସ୍କୁଲର ନାମ ତ ମୁଁ ଶୁଣିନାହିଁ ।

—ଏଇ କେଇବର୍ଷ ହେବ ହୋଇଛି । ନିକଟରେ, କାଳିବାଡ଼ିଠାରେ ।

—ଆମ ସମୟରେ ଏଇ ପଡ଼ାରେ କେବଳ କୁମାର ଉପେନ୍ଦ୍ର କିଶୋର ବିଦ୍ୟାପୀଠ ଥିଲା ।

—ହଳଦୀ ରଙ୍ଗର କାନ୍ଥ ତ ? ବର୍ତ୍ତମାନ ମଧ୍ୟ ଅଛି । ତେବେ ଅନେକ କିଣ୍ଡରଗାର୍ଟେନ ହୋଇଛି ।

—ରାଧାସୁନ୍ଦରୀ ସ୍କୁଲକୁ ଯିବାପାଇଁ ମୋର ଖୁବ୍ ଇଚ୍ଛା ହେଉଚି । ମୃତ୍ୟୁଞ୍ଜୟ ସ୍କୁଲକୁ ମଧ୍ୟ । ରାସ୍ତାର ଉଭୟ ପାର୍ଶ୍ୱରେ ଦୁଇଟିଯାକ ସ୍କୁଲ । ଥରେ ବୃକ୍ଷରୋପଣ ଉତ୍ସବରେ ସ୍କୁଲ ପଡ଼ିଆରେ ମୁଁ ମନ୍ଦାର ଚାରା ରୋପଣ କରିଥିଲି । ଗଛଟା କ'ଣ ଆଉ ନାହିଁ ସ୍ୱପନ ?

—ମନ୍ଦାର ଗଛ କ'ଣ ଏତେଦିନ ରହେ ? ଶାଳ ଶାଗୁଆନ ଲଗାଇଥିଲେ ହୁଏତ ଥାଆନ୍ତା ।

—ପଡ଼ିଆର ଦକ୍ଷିଣ ଦିଗରେ ଗଛଟି ଥିଲା । ମୁଁ ଥିବା ସମୟରେ ଗଛରେ ଫୁଲ ଫୁଟିଥିଲା ।

ସ୍ୱପନ ହସେ । କଲ୍ୟାଣୀ ବୁଝିପାରେ ନାହିଁ ଏ ହସର କାରଣ କ'ଣ—ଗଛ ଲଗାଇଥିବା ଯୋଗୁଁ ନା ଗଛରେ ଫୁଲ ଫୁଟିଥିବାର ଆନନ୍ଦ ଯୋଗୁଁ—ନା କେବଳ ଏହା ସ୍ୱପନର ତା' କଥାରେ ସହଯୋଗ କରିବା ।

—ବୋଧହୁଏ ରୁଖସାନାର ପୁଅଝିଅମାନେ ଅନେକ ବଡ଼ ହୋଇଯାଇଛନ୍ତି ?

—କ'ଣ କହୁଛନ୍ତି, ଅପା ତ ଆଇ ହୋଇଗଲେଣି ।

—କ'ଣ କହୁଛ ? ସେହି ଛୋଟ ରୁଖସାନା, ଆଇ ହୋଇଗଲାଣି ? କଲ୍ୟାଣୀ ଅବାକ୍ ହୁଏ ।

—ମା', ଆଇ କ'ଣ ? ଦୀପେନ ସୋଫାରେ ଶୋଇ କଥା ଶୁଣୁଶୁଣୁ ପ୍ରଶ୍ନକରେ ।

—ଆଇ ବୁଝିପାରୁନାହୁଁ ? ଆଇ ହେଉଛି ମା'ଙ୍କର ମା' । ତୁମର ଆଇଙ୍କୁ ତ ତୁମେ ଦେଖିନାହଁ ।

—ଓ ବୁଝିଛି, ଦିଦିର ପିଲା ହେଲେ ସେ ତୁମକୁ ଆଇ ଡାକିବ । ଏଇଆ ନା ମା' ?

—ହଁ ବାବା । କଲ୍ୟାଣୀ ଦୀପେନର ଚିବୁକ ହଲାଇଦିଏ ।

—ସ୍ୱପନର ପିଲାଟିକୁ ପାଖକୁ ଟାଣିଆଣି ଜଡ଼ାଇଧରେ କଲ୍ୟାଣୀ । ପଚାରେ—ବାବା ତୁମର ନାମ କ'ଣ ?

—ସୌଖୀନ ।

—ତୁମେ ବୋଧେ ଖୁବ୍ ବିଳାସପ୍ରିୟ ପିଲା ।

—ହଁ, ଆବ୍‌ବୁ ଭଳି ବିଳାସପ୍ରିୟ ।

—ତୁମେ ମୋର ନାମ ଜାଣ ?

—ହଁ, ମୁହଁକୁ ଉପରକୁ ଟେକି କହେ ସୌଖୀନ—ତୁମର ନାମ କଲ୍ୟାଣୀ ରାୟ । ତୁମ ବାପାଙ୍କ ନାମ ହରିନାରାୟଣ ରାୟ । ତୁମର ଭାଇର ନାମ ଜ୍ୟୋତିପ୍ରକାଶ ରାୟ ।

ସୌଖୀନକୁ ଆହୁରି ଛାତି ପାଖକୁ ଟାଣିନିଏ କଲ୍ୟାଣୀ । ବାଃ, ଏତେ ନାମ ତୁମର ମନେଅଛି ? ସ୍ୱପନ, ତୁମର ପିଲାଟି ତ ଖୁବ୍ ବ୍ରିଲିୟାଣ୍ଟ ।

—ହଁ ଦିଦି । କିନ୍ତୁ ହେଲେ କ'ଣ ହେବ, ପରିବେଶ ଖୁବ୍ ଖରାପ । ପିଲାଟିକୁ ବାହାରେ ଖେଳିବାପାଇଁ ଛାଡ଼ିପାରେ ନାହିଁ । ଡିଆଁ କୁଦାମାରି ନ ଖେଳିଲେ ପିଲାମାନଙ୍କର ମନ ଛୋଟ ହୋଇଯାଏ ।

କଲ୍ୟାଣୀର ମନ ଖରାପ ହୋଇଯାଏ । କୁହେ—ପରିବେଶ ଖରାପ, ଏକଥା କାହିଁକି କହୁଛ ? ଏଠାକାର ପରିବେଶ କ'ଣ କେବେ ଖରାପ ଥିଲା ?

—ନା ଦିଦି, ଆଜିକାଲି ଭଲମଣିଷଙ୍କ ସଂଖ୍ୟା ଖୁବ୍ କମ୍ । ଆଙ୍ଗୁଳିରେ ସେମାନଙ୍କୁ ଗଣିଦେଇ ହେବ, ଯେଉଁମାନଙ୍କ ସହିତ ଅନ୍ତତଃ ବସାଉଠା କରାଯାଇପାରେ ।

—କେଜାଣି କାହିଁକି ମୋର ଏପରି ମନେହୁଏ ନାହିଁ । ଆଚ୍ଛା, ତୁମର କିମ୍ବା ତୁମ୍ଭମାନଙ୍କର କେବେ କ'ଣ ମନେହୁଏ ସ୍ୱପନ, ଆମ୍ଭେମାନେ ଭିନ୍ନ କାହିଁକି ?

—ଭିନ୍ନ ମାନେ ?

—ଏଇ ଧର ଆମ୍ଭେମାନେ ଏକପ୍ରକାର କଥା କହୁଛୁ, ବଙ୍ଗଳାରେ । ଅଥଚ ଆମେ କାହିଁକି ଦୁଇଟି ଅଲଗା ଦେଶରେ ରହୁଛୁ, ଦୁଇଟି ଦେଶ ସୃଷ୍ଟି କରିବାର ତାତ୍ପର୍ଯ୍ୟତା କ'ଣ ?

—ଆମେମାନେ କ'ଣ ଦୁଇଟା ଦେଶ ସୃଷ୍ଟି କରିଛୁ ?

—ଯେଉଁମାନେ କରନ୍ତୁ ନା କାହିଁକି; କରିଛନ୍ତି ସେମାନଙ୍କ ସ୍ୱାର୍ଥପାଇଁ, ହେଲେ ଆମମାନଙ୍କର କ'ଣ ଲାଭହେଲା କୁହତ ? ଆମେ ସବୁ ଭାଇଭଉଣୀ ନିଜର ଘରଦ୍ୱାର ଛାଡ଼ି କେଉଁଠି କାହିଁ ଦୂରରେ କାହାଘରେ ପଡ଼ିରହିଲୁ, ଆମକୁ କ'ଣ କମ୍ କଷ୍ଟ ହେଇଛି ?

—ତା' ତ ଠିକ୍ ।

—ଧର ଏଇ ତୁମେ ଯେଉଁମାନେ, ତୁମେ, ସେଲିମ, ରୁଖସାନା ଏମାନଙ୍କ ସହିତ କଥାବାର୍ତ୍ତା ହେବାପାଇଁ ମୋର ମନ ଚାହୁଁଛି; ଅଥଚ କଥା କହିପାରୁ ନାହିଁ । ବ୍ରହ୍ମପୁତ୍ର କୂଳରେ ବସିରହିବା ପାଇଁ ଖୁବ୍ ଇଚ୍ଛା କରୁଛି, ପାରୁନାହିଁ । ତୁମେ ବୁଝିପାରିବ ନାହିଁ ସ୍ୱପନ ମୋର କିପରି ଇଚ୍ଛାହୁଏ । କିନ୍ତୁ କୁହତ ମୁଁ କାହିଁକି ପାରୁନାହିଁ ?

ଉତ୍ତେଜନାରେ କଲ୍ୟାଣୀ ଉଠି ଛିଡ଼ାହୁଏ, ଚାଲେ । ଝରକାପାଖରେ ଛିଡ଼ାହୋଇ ହଳଦିଆ ରଙ୍ଗର କାନ୍ଥ ପଛପଟଟିକୁ ଦେଖିବାରେ ଲାଗେ ।

—ଆଚ୍ଛା, କୁହତ ତୁମର କ'ଣ ମନେହୁଏ ନାହିଁ ଆମେ ସବୁ ପୁଣି ଏକ ହୋଇଯିବା ?

—ଏକ ହେବା ମାନେ ?

—ମାନେ କୌଣସି ପାସପୋର୍ଟ ଭିସା ରହିବ ନାହିଁ । କଣ୍ଟା ତାରବାଡ଼ ନଥିବ ।

—ତେବେ ଦୁଇଦେଶ ଏକ ହେବାର କଥା କହୁଛନ୍ତି ? ତାହା କ'ଣ ଏବେ ଆଉ ସମ୍ଭବ ?

—କାହିଁକି ସମ୍ଭବ ନୁହେଁ ? ଜର୍ମାନୀରେ ହେଲାନାହିଁ ?

—ଜର୍ମାନୀ ସହିତ କ'ଣ ବଙ୍ଗଳାଦେଶ ସମାନ ହୋଇପାରେ ? ଦିଦି, ଏଠାରେ ପ୍ରଧାନ ପ୍ରତିବନ୍ଧକ ହେଉଛି ଧର୍ମ ।

—ଧର୍ମ ଆଉ କେତେଦିନ ? ସାରାଜୀବନ କ'ଣ ଧର୍ମକୁ ଅଁଜାଡ଼ି ଆମେ ଚାଲିଥିବା ? ଗୋଟିଏ ଭାଷା, ଗୋଟିଏ ସଂସ୍କୃତି ନିଶ୍ଚୟ ଧର୍ମର ବନ୍ଧନକୁ ଭାଙ୍ଗିଦେଇ ପାରିବ । ନା କ'ଣ କହୁଛ ?

ସ୍ୱପନ ହସେ । ତା' ହସରେ ନାସ୍ତିବାଚକ କିଛି ପ୍ରକାଶିତ ହୁଏ କି ନାହିଁ, କିମ୍ବା ତା' ହସର ଅନ୍ତରାଳରେ କଲ୍ୟାଣୀର କଥା ପ୍ରତି ସମର୍ଥନ ରହିଛି, କଲ୍ୟାଣୀ ସଠିକ୍ ବୁଝିପାରେ ନାହିଁ । କଲ୍ୟାଣୀ ଆହୁରି ମଧ୍ୟ ମନେକରେ ସ୍ୱପନ ଦେଶ ବିଭାଜନ ପରେ ଜନ୍ମଲାଭ କରିଛି । ତାକୁ ଏହି କଷ୍ଟ ବହନ କରି ବୁଲିବାକୁ ପଡୁନାହିଁ । ସେ ହୁଏତ ଜାଣେ ଗୋଟିଏ ମଣିଷକୁ ଦୁଇଖଣ୍ଡ କରିଦେଲେ ହୁଏତ ସେ ପ୍ରାଣରେ ବଞ୍ଚେ, କିନ୍ତୁ ବାସ୍ତବରେ ସେ ଯେ ବଞ୍ଚେନାହିଁ, ତା' ସେ ଜାଣେନାହିଁ । କିପରି ଜାଣିବ ? ସ୍ୱପନକୁ ତ କିଛି ହରାଇବାକୁ ପଡ଼ିନାହିଁ । ସେ ତା'ର ବାପ-ମା', ଆତ୍ମୀୟସ୍ୱଜନ ସମସ୍ତଙ୍କୁ ହିଁ ପାଖରେ ପାଇଛି, ପାଉଛି । ହେଲେ କଲ୍ୟାଣୀର ସବୁକିଛି ଦୂରେଇଗଲା—ସୁଖରେ ରହିବା ପାଇଁ କରାଯାଇଥିବା ଘରଟି ନିଆଁରେ ପୋଡ଼ି ପାଉଁଶ ହେଲା ପରି । ତା' ମନ ଭିତରେ ସଯତ୍ନେ ସାଇତି ରଖିଥିବା ସ୍ୱପ୍ନଗୁଡ଼ିକ ସ୍ୱପନର ଘରେ ଆଦର ସମ୍ଭାଷଣ ପାଇ ବନ୍ୟାର ଜଳରାଶି ପରି ଫୁଲିଉଠେ । ଝରକା ପାଖରେ ଛିଡ଼ାହେଲେ ଲିପାପୋଛା ଅଗଣା, ଟିଣଛାତ ଘର, ପୋଖରୀ, ପୋଖରୀ କଡ଼ରେ କାଠଚମ୍ପା ଗଛ ସବୁକିଛି ସିନେମାର ଚିତ୍ରପଟପରି ଭାସିଉଠେ । ପରିମଳ ଥରେ ପୋଖରୀରେ ପ୍ରାୟ ବୁଡ଼ିଯିବାକୁ ବସିଥିଲା, ପହଁରି ନଜାଣି ଆଗ୍ରହକରି ପାଣି ଭିତରକୁ ପଶିଯାଇଥିଲା, ପାଣିପିଇ ତା'ର ସେ ଯେଉଁ କଦର୍ଯ୍ୟ ଅବସ୍ଥା ! ସରଳାବାଳା ଚିତ୍କାର କରି ଉଠିଥିଲେ—'ଗଲାରେ, ମୋର ପୁଅ ମରିଗଲାରେ ।' କଲ୍ୟାଣୀ ଝରକାଟି ପାଖରେ ଛିଡ଼ାହୋଇ ଠିକ୍ ସେପରି ସରଳାବାଳାଙ୍କ ସେହି କାନ୍ଦଣାର ସ୍ୱର ଶୁଣିବାକୁ ପାଏ, କିଏ ଏପରି ସରଳାବାଳାଙ୍କ ପରି ସ୍ୱର ଧରି କାନ୍ଦୁଛି ? ତେବେ କ'ଣ କାହାର ପିଲା ପୋଖରୀରେ ବୁଡ଼ିଯାଉଛି ?

ଏହି ଭାବନା ରାଜ୍ୟରୁ ସ୍ୱପନ ତାକୁ ଫେରାଇ ଆଣେ, କୁହେ—କ'ଣ ଏତେ ଦେଖୁଛନ୍ତି ? ଗଭର୍ଣ୍ଣମେଣ୍ଟ ତ ସବୁ ନେଇଯାଇଛି । ମୋର କିନ୍ତୁ ଏବେ ମଧ୍ୟ ମନେଅଛି ଆପଣଙ୍କର ସେହି ଘରଟା—ଦୋତାଲା ଦଲାଣ ଥିଲା, ଅନେକ ଗଛ ଥିଲା । ଆମେ

କହୁଥିଲୁ ବଡ଼ଲୋକଙ୍କ ଘର । ଆମେ ବଡ଼ହେବା ପରେ ମଧ୍ୟ ଆପଣଙ୍କ ଘର ପଡ଼ିଆଟିରେ କ୍ରିକେଟ ଖେଳିଚୁ ।

—ସେତେବେଳେ ବାପା ବଞ୍ଚିଥିଲେ ?

—ନା, ସେତେବେଳେ ଘରଟା ଖାଲି ପଡ଼ିରହିଥିଲା । ପଡ଼ିଆର ଘାସଗୁଡ଼ିକ ବଡ଼ ବଡ଼ ହୋଇଯାଇଥିଲା । ନଦୀର ଆରପଟରୁ ବିହାରୀ ଗୋପାଳମାନେ ଆସି ଘାସକାଟି ନେଉଥିଲେ ।

—ଆମ ସମୟରେ ଭାଗୀରଥିର ମା' କ୍ଷୀର ଦେଉଥିଲେ । ଆଚ୍ଛା ଜାଣିଛ, ବର୍ତ୍ତମାନ ସେମାନେ ଅଛନ୍ତି କି ନା ? ଭାଗୀରଥି, ଭାଗୀରଥିର ଭଉଣୀ ପାର୍ବତୀ ?

—ନା ଦିଦି । ସେମାନଙ୍କ ଖବର ଜାଣେନାହିଁ ।

ସୌଖୀନ ଦୀପେନର ହାତଧରି ତା'ର ପଢ଼ାଘରକୁ ନେଇଯାଏ । ଏହାଦେଖି କଲ୍ୟାଣୀର ମନ ଆନନ୍ଦରେ ଭରିଯାଏ । ଅନ୍ୟ ଦିଗରେ ସ୍ୱପନ ମଧ୍ୟ ଶିଶୁପରି ହସି ସେ ଆନନ୍ଦମୋହନରେ ପଢ଼ିଛି, ତା' ପରେ ବ୍ୟବସାୟ କରୁଛି, ବ୍ୟବସାୟରେ ଭଲ ଲାଭ ହୁଏ, ପ୍ରାୟ ତାକୁ ଇଣ୍ଡିଆ ଯିବାକୁ ହୁଏ—ଏହି ସବୁକଥା କହିଚାଲିଥିଲା ।

ଆନନ୍ଦମୋହନର ନାମ ଶୁଣି କଲ୍ୟାଣୀ ଚମକି ପଡ଼ିଲା । ପୁଣି ତା' ଆଖିଆଗରେ ଭାସିଉଠେ ଦଳ ଦଳ ପିଲାଙ୍କର ମୁହଁ । —ଆନନ୍ଦମୋହନରେ ପଢ଼ିଛ ? ଆନନ୍ଦମୋହନରେ ମୋ ସହିତ ବାଦଲ ପଢୁଥିଲା । ପରେ କେଉଁଠାରେ କ'ଣ ପଢ଼ିଲା ଜାଣେନାହିଁ । ତୁମେ ବାଦଲକୁ ଚିହ୍ନିଛ ?

ଏକଦା ଆନନ୍ଦମୋହନର ଜଣେ ଛାତ୍ର ଥିବା ବାଦଲକୁ ମୁଁ ଜାଣେ । ମୁକ୍ତି ସଂଗ୍ରାମରେ ଅଂଶଗ୍ରହଣ କରି ସେ ଗୋଟିଏ ଗୋଡ଼ ହରାଇଛି । କାମାଲପୁରର ଅପରେସନ ଗ୍ରେନେଡ଼ ତା'ର ବାମ ପାଦଟିକୁ ଉଡ଼ାଇ ଦେଇଛି ।

କଲ୍ୟାଣୀର ଶରୀର ଶୀତଳ ହୋଇଆସେ । ତା'ର ମନରେ ଭୟ ସଞ୍ଚାର ହୁଏ ପଚାରିବା ପାଇଁ ସେ ବାଦଲ ଦେଖିବାକୁ କିପରି ?

ସ୍ୱପନ ନିଜଆଡୁ କୁହେ—ତା'ର ଦେହର ରଙ୍ଗ କଳା, ସୁନ୍ଦର ଚେହେରା ।

—ତୁମ ସହିତ ପ୍ରାୟ ଦେଖାହୁଏ ?

—ମଝିରେ ମଝିରେ ମୁକ୍ତିଯୋଦ୍ଧା ସଂସଦକୁ ଆସେ । ସେହିଠାରେ ହିଁ ମୋ ସହିତ ପରିଚୟ । ଦିନେ ଦେଖିଲି ମୁହଁ ଶୁଖାଇ ବାରଣ୍ଡାରେ ବସିଅଛି । କହିଲା, କିଛି ଟଙ୍କାପଇସା ପାଇ ଆସିଛି । ଖୁବ୍ ଟାଣଟୁଣ ଅବସ୍ଥା ।

—ପାଇଥିଲା ?

—କ'ଣ ?

—ଟଙ୍କାପଇସା ?

—ଜାଣେ ନାହିଁ ।

—ଏ ଦେଶରେ ମୁକ୍ତିଯୋଦ୍ଧାମାନେ ଅଭାବରେ ରହନ୍ତି ସ୍ୱପନ ? କଲ୍ୟାଣୀର ସ୍ୱର ଭିନ୍ନ ପ୍ରକାର ଶୁଣାଯାଏ । ଭୟାର୍ତ୍ତ, କରୁଣ ସେ ସ୍ୱର । ସ୍ୱପନର ମୁଖମଣ୍ଡଳର ମାଂସପେଶୀ କଠିନ ହୋଇଯାଏ, କୁହେ—ଏ ଦେଶର ଶାସକମାନେ କେବଳ ସବୁଠାରୁ ଆନନ୍ଦରେ ଅଛନ୍ତି । ମୁକ୍ତିଯୋଦ୍ଧାମାନେ ଖାଇବାକୁ ନପାଇ ମରନ୍ତି । ଆଉ ଯେଉଁ ମୁକ୍ତିଯୋଦ୍ଧାମାନେ ଭଲ ପଜିସନରେ ଅଛନ୍ତି, ସେମାନେ ଶାସକଗୋଷ୍ଠୀଙ୍କ ସହ ଆପୋସ କରି ବଞ୍ଚିଛନ୍ତି । ଫଣ୍ଡାମେଣ୍ଟାଲିଷ୍ଟମାନେ ମୁଣ୍ଡ ଉପରେ ବସିବାକୁ ଲାଗିଛନ୍ତି । ଅଥଚ ଦେଶ ସ୍ୱାଧୀନ ହେବାପରେ ଏମାନେ ଗାତ ଭିତରେ ଆତ୍ମଗୋପନ କରି ରହିଥିଲେ । ଧୀରେ ଧୀରେ ନାନା ସରକାରଙ୍କ ନିକଟରୁ ନିର୍ଭରତା ପାଇ ଏମାନେ ଯେ ଗାତରୁ ବାହାରିଛନ୍ତି ତା' ନୁହଁ, ପାର୍ଲାମେଣ୍ଟରେ ମଧ୍ୟ ଆସ୍ଥାନ ଜମାଇ ବସିଛନ୍ତି । ଏମାନଙ୍କ ସହିତ ହାତମିଳାଇ ବି.ଏନ୍.ପି. ଭୋଟରେ ଜିତିଲା । ଶେଖ୍ ମୁଜିବ ସରକାର ଏମାନଙ୍କୁ କ୍ଷମା କରିଥିଲେ, ମାତ୍ର ଜିଆଁ ଏମାନଙ୍କୁ ଆଣି ଗାଦିରେ ବସାଇଲେ । ମନ୍ତ୍ରୀକଲେ । ବର୍ତ୍ତମାନର ସରକାର ଓ ଜାମାଇତିମାନଙ୍କ ମଧ୍ୟରେ କୌଣସି ତଫାତ୍ ନାହିଁ ଦିଦି ।

ବାଦଲ ବି କ'ଣ ମୁକ୍ତିସଂଗ୍ରାମ କରିଥିଲା; ତା'ର ବାଦଲ ? ମୁକ୍ତିଯୁଦ୍ଧରେ ସେ ଗୋଡ଼ ହରାଇ ବସିଛି; ଅଥଚ ସେ ଅନିର୍ବାଣର ମୋହରେ ମଗ୍ନରହି କିଛିହେଲେ ଜାଣିପାରିଲା ନାହିଁ । ନିଜପ୍ରତି ଘୃଣାରେ ତା'ର ଦେହ-ମନ ଶିରଶିର କରିଉଠେ ।

ହଠାତ୍ ମନରେ ପଡ଼ିଯାଏ କାହାର ଲେଖା ଏକ କବିତା—

'କେଉଁଠାରେ ନାହିଁ କିଛି ଅବଜ୍ଞାର ଭାବ କିମ୍ବା ଆନ୍ତରିକ ସ୍ୱର
ମହାନ୍ ପ୍ରତାପୀ ଏହି ବଙ୍ଗଳାରେ—ପଶ୍ଚିମ ବଙ୍ଗରେ
ସେହି ଯେଉଁ ଆତ୍ମଘାତୀ ଯଦୁବଂଶ ମାତିଉଠେ ଅଦ୍‌ଭୁତ ନିଶାରେ
ହିଂସ୍ରତାର ଘାତ ପ୍ରତିଘାତ ଭରିଯାଏ ପ୍ରତି ପଦପାତେ

ସେହି ଭୀରୁ ପଳାୟନ କାପୁରୁଷ ଆତ୍ମସମର୍ପଣ
ଅନ୍ତରେ ସନ୍ଦେହ ଆଉ କୁଟିଳ ବାସନା,
ଯେତେବେଳେ ସେପଟ ବଙ୍ଗରେ–ଅର୍ଥାତ୍ ବଙ୍ଗଳା ଦେଶରେ
ପ୍ରତିଦିନ ରାସ୍ତାଘାଟ ତାଜାରକ୍ତେ କରେ ବନ୍ଦାପନା ।
ମାଇଲ ମାଇଲ ଗ୍ରାମ ପୋଡ଼ିଯାଏ ଶ୍ମଶାନର ଚିତାପରି
ବିଷଧର ସାପକରେ ଖେଳା,
ଯେତେବେଳେ ଏହି ବଙ୍ଗଳା ଦେଶରେ କରିମ ଓ ମକବୁଲମାନେ
ଦୁର୍ଜୟ ସାହସ ନେଇ ଲମ୍ଫଦେଇ ପ୍ରତିହତ କରିଥାନ୍ତି
କମାଣର ଗୋଳା ।
କେଉଁଠି ନଥାଏ ଆନ୍ତରିକ ଉଷ୍ମତା ବା ଅବଜ୍ଞାର ସ୍ପର୍ଶ
ଏହି ସେହି କାର୍ଯ୍ୟବ୍ୟସ୍ତ ପଶ୍ଚିମ ବଙ୍ଗର ।'

ଲିପି ଟେବୁଲ ଉପରେ ଖାଇବା ସଜାଡ଼ି ଡାକିବାକୁ ଆସେ । ଦୋକାନରୁ ବିରିୟାନି ଆଣିଛି । ଅଳ୍ପ ସମୟ ମଧ୍ୟରେ ଦୀପେନ ସ୍ୱପନର ପୁଅ ସୌଖୀନ ସହ ବେଶ୍ ଭାବ ଜମେଇ ନେଇଛି । ସେମାନଙ୍କୁ ଡାକିଆଣି ଲିପି ଚେୟାରରେ ବସାଇଦିଏ । କଲ୍ୟାଣୀର ଖାଇବାକୁ ମନନାହିଁ । ଗ୍ଲାସରେ ପାଣି ଢାଳୁ ଢାଳୁ ପଚାରେ–ସେଇ ବାଦଲ ଏବେ କେଉଁଠାରେ ରହୁଛି ?

–ଜାଣେ ନାହିଁ । ଶୁଣିଛି କୌଣସି ଏକ ଗ୍ରାମରେ, ତାରାକାନ୍ଦା ନଚେତ୍ ଧୋବାଉଡ଼ା-ଟୋବାଉଡ଼ା ହୋଇପାରେ ।

–ତା' ଘର ତ ନାଳିତାବାଡ଼ିରେ ଥିଲା ।

–ନାଳିତାବାଡ଼ି ? ଅବଶ୍ୟ ସେକଥା ଜାଣେନା ।

–ସ୍ୱପନ, ଥରେମାତ୍ର କ'ଣ ସେଠାକୁ ଯାଇ ହେବନାହିଁ ?

–କେଉଁଠାକୁ ?

–ବାଦଲ ଯେଉଁଠାରେ ରୁହେ–ନାଳିତାବାଡ଼ି ହେଉ କି ଧୋବାଉଡ଼ା ହେଉ କି ଯେଉଁଠାରେ ହେଉ ।

–କ'ଣ ଯେ କହୁଛନ୍ତି ଦିଦି ! ମାତ୍ର କେଇଟା ଦିନପାଇଁ ଆପଣ ଆସିଛନ୍ତି । କିପରି ଭାବେ ସେହିସବୁ ବେକ୍‌ୱାର୍ଡ଼ ଅଞ୍ଚଳକୁ ଯିବେ ? ରାସ୍ତା ଭଲ ନୁହେଁ ।

—ରାସ୍ତା ଭଲ ନୁହେଁ ? ତେବେ ବାଦଲ କିପରି ଯାଏ ?

—ସେ ମୁଢ଼ିଟିଣ ବସ୍‌ରେ ଚଢ଼ିଯାଏ । ଆପଣ କ’ଣ ତାହା ପାରିବେ ? ବୋଧହୁଏ ଅନେକ ବାଟ ଚାଲିବାକୁ ବି ପଡ଼ିବ ।

—ବାଦଲ ଯେତେବେଳେ ଯାଇପାରୁଛି ଆମେ ମଧ ନିଶ୍ଚୟ ପାରିବୁ ।

—କଲ୍ୟାଣୀର ଉତ୍ସାହକୁ ସ୍ୱପନ ହସରେ ଉଡ଼ାଇଦେଲା । କହିଲା—ବାଦଲ ପାରିଲା ବୋଲି ଆପଣ ମଧ ପାରିବେ, ଏହା କି ପ୍ରକାର ଯୁକ୍ତି ?

ଅନେକ ମୁହୂର୍ତ୍ତ ସ୍ଥିରହୋଇ ବସିବାପରେ କଲ୍ୟାଣୀ ପଚାରେ—ସେ କ’ଣ ବାହାସାହା ହୋଇଛି ? ପିଲାଛୁଆ ?

—ସେକଥା ତ ଜାଣେ ନାହିଁ ଦିଦି । କିଭଳି ବା ବାହାହେବ ! ପଙ୍ଗୁଲୋକର ଘରେ କିଏ ବା ରହିବ !

—ବାଦଲ ପଙ୍ଗୁ, ଏକଥା ମୁଁ ବିଶ୍ୱାସ କରିପାରୁନାହିଁ ।

—ଯୁଦ୍ଧରେ କ’ଣ ଆଉ ଜଣେ ଦୁଇଜଣ ପଙ୍ଗୁ ହୋଇଛନ୍ତି, ହଜାର ହଜାର ।

—ଆଚ୍ଛା ସ୍ୱପନ, ତା’ର ମୁଣ୍ଡରେ କ’ଣ ଘନ କୁଞ୍ଚୁକୁଞ୍ଚିଆ କେଶ ଥିଲା ? କଲ୍ୟାଣୀର ଚକ୍ଷୁ ଦୁଇଟିରେ ଆହତ କପୋତର ଡେଣା ଝପଟୁଥିଲା ।

—ଏତେକଥା ମନେ ନାହିଁ ।

—ଆଖି ବଡ଼ ବଡ଼ ? ଠିଆନାକ ?

—ବୋଧହୁଏ ।

—ବେକରେ ଗୋଟାଏ କଳାଜାଇ ଦେଖିଛ ?

—ବେକରେ କଳାଜାଇ ? କେଜାଣି...ଏତେ ଖିଆଲ କରିନାହିଁ ।

ବାଦଲ ବେକରେ ଗୋଟିଏ କଳାଜାଇ ଥିଲା । କଲ୍ୟାଣୀ ସେଇଟିକୁ ସ୍ପର୍ଶ କଲେ ବାଦଲ କହୁଥିଲା ବେକରେ କଳାଜାଇ ଥିଲେ ଶତ୍ରୁ ହାତରେ ଗୁଳିଖାଇ ମରିବାକୁ ହୁଏ । ଏହାଶୁଣି ସେ ମନଦୁଃଖ କରେ । କୁହେ—ନା, ତୁମେ କେବେ ବି ମରିବ ନାହିଁ । ମୁଁ ତୁମକୁ ମରିବାକୁ ଦେବି ନାହିଁ । ଖୁବ୍ ଦୃଢ଼ତାର ସହିତ କଲ୍ୟାଣୀ ଏହା କହୁଥିଲା ! ତା’ କଣ୍ଠର ସେହି ଦୃଢ଼ତା କେବେ କେତେବେଳେ ମରିଯାଇଛି, ତା’ର ସ୍ୱପ୍ନାକାଶରୁ ଶହ ଶହ ନକ୍ଷତ୍ର କେତେବେଳେ ଯେ ନିଷ୍ପ୍ରଭ ହୋଇଯାଇଛି, ତା’ ସେ ଜାଣିପାରି ନାହିଁ ।

ଲିପି ବାରମ୍ବାର କହୁଛି ଦିଦି କିଛି ତ ଖାଉନାହାନ୍ତି । ଆଉ ଖଣ୍ଡିଏ ମାଂସ ନିଅନ୍ତୁ । ଆଗରୁ ଜାଣିଥିଲେ ମାଛ-ଫାଛ କିଛି ରାନ୍ଧିଥାନ୍ତି । ଏତେ ଦିନ ପରେ ଦେଶକୁ ଆସିଲେ...

କଲ୍ୟାଣୀର ଚକ୍ଷୁ ଅଶ୍ରୁସିକ୍ତ ହୁଏ । ତା' ଦେଖି ସ୍ୱପନ କୁହେ—କ'ଣ ଦିଦି, ଆଖିରେ କିଛି ପଡ଼ିଲା ନା କ'ଣ ।

—ନା ନା, ଗୋଟିଏ ରାଗଲଙ୍କା ଖାଇଦେଲି ତ, ସେଇଥିପାଇଁ ।

ଏକପ୍ରକାରି ମସିହା ଯୁଦ୍ଧରେ ସ୍ୱପନ ଭାଗ ନେଇ ନାହିଁ, କାରଣ ତା'ର ବୟସ କମ୍ ଥିଲା । ସ୍ୱାଧୀନତା ପକ୍ଷର ଶକ୍ତିସହ ସେ ସେହି କିଶୋର ବୟସରୁ ସମ୍ପୃକ୍ତ ଅଛି । ସ୍ୱପନର ମୁହଁଟାଯାକ ବେଦନାର ମଳିନ ଛାୟା । କୁହେ—ଦିଦି, ଚାରିଆଡ଼କୁ ଚାହିଁ ଦେଖିଲେ ମନ ଖୁବ୍ ଖରାପ ହୋଇଯାଏ । ବିଦେଶୀ ସାହାଯ୍ୟକୁ ନିର୍ଭର କରି ଏ ଦେଶ ଚାଲିଛି, ବର୍ଷପରେ ବର୍ଷ ବନ୍ୟାହୁଏ, ଘୂର୍ଣ୍ଣିବାତ୍ୟା ହୁଏ, ଆଉ ବଙ୍ଗଳାଦେଶ ମହା ଆନନ୍ଦରେ ଇୟା ତା' ଦୁଆରକୁ ଭିକ୍ଷା କରିବାପାଇଁ ବାହାରିଯାଏ । ଏଥିମଧ୍ୟରେ ସ୍ମଗଲରମାନେ ଟଙ୍କାର ପାହାଡ଼ ଗଢ଼ିଛନ୍ତି, ଆଉ ତା' ସଙ୍ଗେ ଗରିବଙ୍କ ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ଇଲିଟରେଟଡ଼ ଅନ୍‌କଲଚର୍ଡ଼ ଲୋକଙ୍କ ହାତରେ ବର୍ତ୍ତମାନ ଗଦା ଗଦା ଟଙ୍କା । ସେମାନେ ଏହି ଦେଶରେ ଇସଲାମି ସଂସ୍କୃତି ଗଢ଼ିବାକୁ ଚାହାନ୍ତି । ମଣିଷଙ୍କ ପେଟରେ ଭାତ ନାହିଁ, ବିଦ୍ୟାନାହିଁ, ଶିକ୍ଷାନାହିଁ; ଅଥଚ ଦୁଇ ଦୁଇଟା ଘରର ବ୍ୟବଧାନରେ ମାର୍ବଲ ପଥରରେ ତାରାଖଚିତ ମସ୍‌ଜିଦ ମୁଣ୍ଡଟେକେ । ଦେଶଟା ବର୍ତ୍ତମାନ ମିନି ପାକିସ୍ଥାନ ହୋଇଯାଇଛି । ଖୁବ୍ ଦୁଃଖଲାଗେ ।

କଲ୍ୟାଣୀ କହିବାପାଇଁ କୌଣସି କଥା ଖୋଜି ପାଏନାହିଁ । ନିଜ ଜୀବନରେ କେତେ ଭଙ୍ଗାରୁଜା ହେଲା, ସ୍ୱପ୍ନର ଚାରାଗଛ ଜଳିପୋଡ଼ି ନଷ୍ଟଭ୍ରଷ୍ଟ ହୋଇଗଲା, ତଥାପି ମନେହୁଏ ତା'ର ଆନ୍ତରିକତା କିମ୍ବା ଅବଜ୍ଞା କୌଣସିଟିର ଉଣା ପଡ଼ିନାହିଁ, ଅତି ସରଳ ସୁନ୍ଦର ପରିପାଟି ତା'ର ଜୀବନର ଧାରା । ବାଦଲର ଠିକଣାଟା କ'ଣ ମିଳିବ ! ଇଚ୍ଛାକଲେ ହୁଏତ ମିଳିଯାଇପାରେ, କେଉଁ ଅଜ୍ଞାତବାସ, ଅଭିମାନ ଆଉ ଅବହେଳା ମଧ୍ୟରେ ବାଦଲ ତା'ର ବ୍ୟର୍ଥ ଅଥର୍ବ ଜୀବନ ଯାପନ କରିବାରେ ଲାଗିଛି, ଥରେ ମାତ୍ର ତାକୁ ଦେଖିବା ପାଇଁ ତା'ର ଇଚ୍ଛାହୁଏ । କିନ୍ତୁ କଲ୍ୟାଣୀ କେଉଁ ମୁହଁ ନେଇ ତା ସାମ୍ନାରେ ଛିଡ଼ାହେବ ! କଲ୍ୟାଣୀ ଜୀବନରେ ସବୁକିଛି ପାଇଛି—ସ୍ୱାମୀ, ସଂସାର, ସନ୍ତାନ, ଟଙ୍କା ପଇସା, ଆନନ୍ଦ...ଆନନ୍ଦ ମଧ୍ୟ ହୁଏତ ପାଇଛି । ଏପରି ବି ହୋଇପାରେ ଏ ବାଦଲ ସେ ବାଦଲ

ନୁହେଁ, ଆନନ୍ଦମୋହନରେ ପଢ଼ିଥିବା ଛାତ୍ରମାନଙ୍କ ମଧ୍ୟରେ ବାଦଲ କ'ଣ କେବଳ ଜଣକର ନାମ !

ସ୍ୱପନ ରିକ୍‌ସା କରିଦେବା ପାଇଁ ତଳକୁ ଓହ୍ଲାଇଆସେ । ସୌଖୀନ ଆଉ ଲିପି ଦୋତାଲାରେ ଛିଡ଼ାହୋଇ ହାତ ହଲାନ୍ତି । ସେଇମାନଙ୍କର ଆନ୍ଦୋଳିତ ହାତ ଦିଗକୁ କଲ୍ୟାଣୀ ଆକୁଳ ନୟନରେ ଚାହିଁରୁହେ । ମନେ ମନେ କଲ୍ୟାଣୀ କହିଉଠେ—'ଏତେ ଭଲ ପଡ଼ୋଶୀ କ'ଣ କାହା ଭାଗ୍ୟରେ ଜୁଟେ ! ମୋର ଜନ୍ମମାଟି ନିକଟରେ ତୁମେମାନେ ରହିଲ, ଦେଖାଚାହାଁ କରିବ ।' ହଠାତ୍ କଲ୍ୟାଣୀର ମନେହୁଏ ସେମାନେ କ'ଣ ଦେଖାଚାହାଁ କରିବେ ? କ'ଣ ଆଉ ଅଛି ଦେଖାଚାହାଁ କରିବାର । ମାଟି ? ହଁ ମାଟିହିଁ କେବଳ । ଏଠାରେ ଅବହେଳାରେ ପଡ଼ିରହିଲା ଏଇ ସତରଗୁଣ୍ଠ ଜମି, ଗଛଟି ମଧ୍ୟ ବଡ଼ ଏକା, ମଝିରେ ମଝିରେ ଏଇ ଗଛଟି ପାଖକୁ ଯାଇ ଟିକିଏ ବସ । ତାହାର ତ ଆଉ କେହି ରହିଲେ ନାହିଁ । କଲ୍ୟାଣୀ ମଧ୍ୟ ହାତ ହଲାଏ । ବିଷାଦ ବେଦନାରେ ତା'ର ଆଙ୍ଗୁଳି ଥରିଉଠେ । ଯଦି ତା'ର ବାରବାର ସ୍ୱପନ ଆଉ ଲିପିଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଇଚ୍ଛା ହୁଏ ? ବାରବାର ଯଦି ତା'ର ଇଚ୍ଛାହୁଏ ଏହି ଚୌହଦି ଭିତରକୁ ଆସିବା ପାଇଁ ତାହା କ'ଣ ସମ୍ଭବ ନୁହେଁ ? କାହିଁକି ସମ୍ଭବ ନୁହେଁ ? ରିକ୍‌ସାପାଇଁ ବଡ଼ ରାସ୍ତା ପର୍ଯ୍ୟନ୍ତ ଯିବାକୁ ହେବ । ବାଟରେ ଚାଲିବା ସମୟରେ କଲ୍ୟାଣୀ ପ୍ରଶ୍ନକରେ—ଏହି ଦିଗରେ ପେଡ଼ା ଦୋକାନ ଥିଲା ନା ?

ସ୍ୱପନ କହିଲା—ଆଉ କ'ଣ ଖାଣ୍ଟି ଦୁଧରେ ପେଡ଼ା ହେଉଛି ଦିଦି ? କେଉଁଦିନରୁ ଏସବୁ ଉଠିଯାଇଛି ।

ଅଧାମଇଲା ଜାମାପିନ୍ଧା କିଛି ଛୋଟପିଲା ରାସ୍ତାରେ ଖେଳୁଥିଲେ, ସେମାନେ ଖେଳ ବନ୍ଦକରି କଲ୍ୟାଣୀ ଦିଗକୁ ଚାହିଁ ରହିଲେ । କି କରୁଣ ସେମାନଙ୍କର ମୁଖ, ଚକ୍ଷୁ କୋଟରାଗତ, ଠାକରା ଗାଲ, ପଞ୍ଜରାର ହାଡ଼ ଗଣିହେବା ଭଳି ଅବସ୍ଥା, ମାଲନିଉଟ୍ରିସନ୍‌ରେ ଭୋଗୁଥିବା ପିଲାଗୁଡ଼ିକ...ସେମାନଙ୍କୁ ଦେଖି କଲ୍ୟାଣୀର ଖୁବ୍ ମମତା ହେଲା ।

ହଠାତ୍ ସେମାନେ ହସିଉଠନ୍ତି, ସେଇ ମଳିନ ଶିଶୁମାନେ ହସରେ ଉଚ୍ଛୁଳିପଡ଼ନ୍ତି, ଆଉ ଚିତ୍କାର କରି କହିଉଠନ୍ତି—'ହିନ୍ଦୁ ହିନ୍ଦୁ ତୁଳସୀକୁଣ୍ଡ, ହିନ୍ଦୁ ଖାଏ ଗୋରୁମୁଣ୍ଡ ।'

କଲ୍ୟାଣୀର ଦେହ ଥରିଉଠେ । ସେ ଆଡ଼ଚକ୍ଷୁରେ ସ୍ୱପନ ଦିଗକୁ ଚାହେଁ, ନିଜପାଇଁ ନୁହେଁ, ସ୍ୱପନର ଲଜ୍ଜାକଥା ଚିନ୍ତାକରି ସେ ଲଜ୍ଜିତ ହୁଏ । ସ୍ୱପନ ନିଶ୍ଚୟ ଭୟ

ଆଉ ସଙ୍କୋଚରେ କୁଙ୍କୁରିଯାଇଛି । ଅନେକ ବାଟ ସେମାନେ ନୀରବରେ ଆଗେଇଗଲେ, ପଛରେ ସେତେବେଳ ପର୍ଯ୍ୟନ୍ତ 'ହିନ୍ଦୁ ଖାଏ ଗୋରୁମୁଣ୍ଡ'ର ଅବୋଧ ଜିହ୍ୱାର ଉଚ୍ଚାରଣ ତରଙ୍ଗାୟିତ ହେଉଥିଲା ।

ଏକସମୟରେ ଦୂରରୁ ଟିନ୍ ଟିନ୍ ଶବ୍ଦକରି ଗୋଟିଏ ରିକ୍ସା ଆସେ । ଯେପରି ପଛରୁ ଆସୁଥିବା ସେଇ ଚିତ୍କାର କଲ୍ୟାଣୀର କାନରେ କିଛି ବାଜିନି, ସେ ସ୍ୱପନର ହାତ ଦୁଇଟାକୁ ଧରି କହିଲା—ଆମର ଆଉ ଦେଖା ହେବ କି ନା ଜାଣେନାହିଁ, ତଥାପି ତୁମେ ଆମ ଘର ପାଖରେ ରହିଲ, ତୁମ ଉପରେ ମୋର ଖୁବ୍ ଭରସା ରହିଛି ।

ରିକ୍ସାକୁ ଉଠି କଲ୍ୟାଣୀ ପୁଣି ଡାକେ—ସ୍ୱପନ !

ସ୍ୱପନ ଉତ୍ସୁକ ଦୃଷ୍ଟିରେ ଚାହିଁରୁହେ, ସେହି ପିଜୁଳିଟିଏ ପାଇବାର ଚାହାଣି ଭଳି । କଲ୍ୟାଣୀ କହିଲା—ଯଦି ସେହି ବାଦଲ ନାମକ ମୁକ୍ତିଯୋଦ୍ଧାଙ୍କ ସହ କେବେ ବି ସାକ୍ଷାତ ହୁଏ, ତେବେ ତୁମର ଏହି ଦୁଃଖିନୀ ଦିଦିର କଥା ମନେକରି ତା'ପାଇଁ କିଛିହେଲେ କର । ମାସକୁ ମାସ ଯଦି ତୁମ ଠିକଣାରେ କିଛି ଟଙ୍କା ପଠାଏ, ତୁମେ କ'ଣ ତା' ପାଖରେ ପହଞ୍ଚାଇ ଦେଇପାରିବ ?

ସ୍ୱପନ ଆଶ୍ଚର୍ଯ୍ୟ ହୁଏ । କୁହେ—ଆପଣ ଯାହାର କଥା ଭାବୁଛନ୍ତି ସେ ଯଦି ସେହି ଲୋକ ହୋଇନଥିବ !

—ନହେଉ । କଲ୍ୟାଣୀର କଣ୍ଠ ରୁଦ୍ଧ ହୋଇଯାଏ ।

ରିକ୍ସା ଚାଲିବା ପାଇଁ ଆରମ୍ଭ କରେ । ପଛରେ ରହିଯାଏ ଅକସ୍ମାତ୍ ଦେଖା ହୋଇଥିବା ପଡ଼ୋଶୀ ସ୍ୱପନ, ସ୍ୱପନ ପଛରେ ସେହି ନୂତନ ବାଳକ ଦଳ ।



## = ସାତ =

ଶରିଫାଙ୍କ ଘରେ ରାତିରେ ମାଂସ ପଲାଉ ରନ୍ଧାହୁଏ । ଆତାହାର ସୋଫାରେ ବସିପଡ଼ି ଡାକେ—କାହିଁ, ଅତିଥିମାନଙ୍କୁ ଡାକ, ବିଚରା ଦିନତମାମ ଘୂରିଛନ୍ତି । ଖାଇପିଇ ଶୋଇପଡ଼ନ୍ତୁ ।

ପଲାଉ ମାଂସ ଖାଇବାରେ କଲ୍ୟାଣୀର ଆଗ୍ରହ ନାହିଁ । ନାଲି ବିଓଲି ଚାଉଳର ଭାତ, ସୋରିଷବଟା ଇଲିଶି, ଚେପ୍‌ଟା ଶୁଖୁଆର ଭର୍ତ୍ତା, କଉମାଛ ଭଜା ପାଇଁ ଏକ ଅବଶୋଷ ତା'ର ଜିଭତଳେ ରହିଯାଏ । ଶରିଫା ତା' ଅତିଥିମାନଙ୍କ ପାଇଁ ରୋଷେଇ କରିଛି । ଖାଇବା ଟେବୁଲରେ ବସି 'ରନ୍ଧା ଭଲ ହୋଇଛି' ତ ବୋଲି ପ୍ରଶ୍ନକରେ । କଲ୍ୟାଣୀ ଦୀପେନଙ୍କୁ ଖୁଆଇ ଦିଏ । ଶରିଫା ତା'ର ପୁଅଝିଅଙ୍କ ଖାଇବା ତାଳିରେ ଖାଦ୍ୟସାମଗ୍ରୀ ଦେଉଥିବା ସମୟରେ କହିଲା—ଲୋପାର ବାପା କହୁଥିଲେ ଅତିଥିମାନଙ୍କୁ ଚାଇନିଜ ଖାଦ୍ୟ ଦେବାପାଇଁ । ମୟମନସିଂହରେ ତିନୋଟି ଚାଇନିଜ ରେଷ୍ଟୁରାଣ୍ଟ ହୋଇଛି ।

କଲ୍ୟାଣୀ କହିଥିଲା—ନା ନା, ଚାଇନିଜ ଖୋଇବାକୁ ଦେବୁ କାହିଁକି । ଘରତିଆରି ଖାଦ୍ୟରେ ତ ସ୍ୱାଦ ବେଶି । ତା'ଛଡ଼ା ଚୀନାମାନଙ୍କର ଖାଦ୍ୟ ମୋତେ ଆଦୌ ଭଲଲାଗେ ନାହିଁ ।

ଆତାହାର ସୋଫାରେ ବସି ଟେଲିଭିଜନ ଦେଖୁ ଦେଖୁ କଲ୍ୟାଣୀ ଉଦ୍ଦେଶ୍ୟରେ କୁହେ—ଆର୍ଶୀବାଦ ମାର୍କେଟକୁ ଯାଇଥିଲେ ? ଭଲ ମାର୍କେଟ । ଲୁଗାପଟା ମଧ୍ୟ ଶସ୍ତାରେ ମିଳେ । ରିକ୍‌ସାବାଲାଙ୍କୁ କହିଲେ ନେଇଯିବେ ।

—ସତରେ କହିବାକୁ ଗଲେ ମାର୍କେଟ ଯିବାପାଇଁ ମୋର ସେପରି କିଛି ଆଗ୍ରହ ନଥିଲା ।

—ଓ, ଆପଣଙ୍କ ସହରରେ ତ ଏହାଠାରୁ ଆହୁରି ଭଲ ମାର୍କେଟ ଅଛି ।

—କାରଣଟା ଠିକ୍ ତାହା ନୁହଁ । ବାସ୍ତବରେ କିଛି କିଣାକିଣି କରିବା ପାଇଁ ତ ଆସିନାହିଁ ।

—ଓ, ସେଇକଥା କୁହନ୍ତୁ । ତେବେ ଆଜି କେଉଁ କେଉଁ ସ୍ଥାନକୁ ଯାଇଥିଲେ ?

କଲ୍ୟାଣୀ ଖାଇବା ଟେବୁଲରେ ଦୀପେନକୁ ଖୁଆଇ ଦେଉଥିଲା । ରାତିରେ ଏବେ ମଧ୍ୟ ଦୀପେନ ମା' ହାତରେ ଖାଏ । ଏହା ହେଉଛି ତାହାର ଏକ ଅଦ୍‌ଭୁତ ରୁଚି । ଦୀପେନକୁ ଖୁଆଇ ଦେଉ ଦେଉ କଲ୍ୟାଣୀ ଉତ୍ତର ଦିଏ—କାଳିବାଡ଼ି, କଲେଜରୋଡ଼, ଶ୍ମଶାନଘାଟ...

—କାଳିବାଡ଼ିରେ କ'ଣ ଦେଖିଲେ, ଆପଣଙ୍କ ଘରଦ୍ୱାର ତ ନାହିଁ ନା କ'ଣ !

—ଘରଟି ନାହିଁ । କିନ୍ତୁ ସେହି ମାଟି ତ ଅଛି । ଆଉ ଅଛି ଗୋଟିଏ ଜାମୁଗଛ ।

—ଜାମୁଗଛ ? ଜାମୁଗଛକୁ ନେଇ ବର୍ତ୍ତମାନ ତ କିଛି କରାଯାଇ ପାରିବ ନାହିଁ । ବୋଧହୁଏ ପରିବାର ପରିକଳ୍ପନାର ସରକାରୀ ଅଫିସ ଖୋଲିଥିବ । ତେବେ ଭିଟାମାଟି ଫେରି ପାଇବାର କିଛି...

—ମୁଁ ଭିଟାମାଟିର ଅଧିକାର ସାବ୍ୟସ୍ତ କରିବାପାଇଁ ଆସିନାହିଁ । ଏମିତି ଟିକେ ଦେଖିଯିବାପାଇଁ ଆସିଛି ।

କଲେଜରୋଡ଼ରେ କ'ଣ ଥିଲା ? କୌଣସି ଆତ୍ମୀୟଙ୍କର ଘର...

—ନା, ସେଠାରେ ମୋର କେହି ଆତ୍ମୀୟ ନାହାନ୍ତି । ଦୂରସମ୍ପର୍କୀୟ କକା ଦୁଇଜଣ ଥିଲେ, ସେମାନେ ଯେ କେଉଁଠି କିଏ ଜାଣେ । ଚିଟାଗଙ୍ଗରେ ମାଉସୀଙ୍କ ଘର ଥିଲା । ଆଉ ନାହିଁ, ମଉସା ମାଉସୀ ଦୁଇଜଣଯାକ ମରି ଯାଇଛନ୍ତି । ଗୋପୀବାଗଠାରେ ଜଣେ ଆତ୍ମୀୟ ଥିଲେ, ଶୁଣିଛି ସେ ମଧ୍ୟ ଗତବର୍ଷ କଲିକତା ଚାଲିଯାଇଛନ୍ତି ।

—ଏ ଦେଶରେ ହିନ୍ଦୁମାନେ ଫୁରୁସତ ପାଇଲେ ଇଣ୍ଡିଆ ଚାଲିଯାଆନ୍ତି । ଏ ଦେଶରେ ଟଙ୍କା ପଇସା ରଖନ୍ତି ନାହିଁ । ଯାହା ପାଆନ୍ତି ପଠାଇ ଦିଅନ୍ତି । ଜମି କିଣନ୍ତିନାହିଁ କି ଘର କରନ୍ତି ନାହିଁ । ସମସ୍ତଙ୍କର ଇଣ୍ଡିଆ ଯିବାର ଲକ୍ଷ୍ୟ ।

କଲ୍ୟାଣୀ ମୁହଁ ତଳକୁ କରି ପଲାଉ ଗୋଳାଇବାରେ ଲାଗିଥାଏ । ଆତାହାର ସେଇମିତି ତା' ଆଡ଼କୁ ଚାହିଁଥାଏ । କୁହେ—ଆପଣଙ୍କ ସ୍ୱାମୀ କାହିଁକି ଆସିଲେ ନାହିଁ ?

—ତାଙ୍କର କାମର ଚାପ ଖୁବ୍ ଅଧିକ, ସେଇଥିପାଇଁ ।

—ଭାଇସାହେବ କି ଚାକିରି କରନ୍ତି ?

—ବ୍ୟାଙ୍କରେ । ବ୍ୟାଙ୍କର ମେନେଜର ।

—ତେବେ ଭାଇସାହେବ କ'ଣ ସେଠିକା ବାସିନ୍ଦା ନା ଏଠାରୁ ଯାଇଥିବାମାନଙ୍କ ମଧ୍ୟରୁ ?

—ସେ ସେଠାକାର । ମେଦିନୀପୁରର ।

—ସେ ଆପଣଙ୍କୁ ଏକାକୀ ଆସିବାକୁ ଦେଲେ ?

—କିଏ ?

—ଆପଣଙ୍କର ସ୍ୱାମୀ ?

—ନଦେବାର କ'ଣ ଅଛି ?

—ଅବଶ୍ୟ ତାହା ଠିକ୍ । କଲିକତାର ଝିଅମାନେ ତ ଟିକିଏ ଭିନ୍ନ ପ୍ରକାର । ଡ୍ୟାମ କେୟାର, ସତ ନା ?

ଆତାହାର ଖେଁ-ଖେଁ କରି ହସେ । ଶରିଫା ଆତାହାର ଦିଗକୁ ଆଡ଼ଆଖିରେ ଚାହେଁ, କୁହେ—ତୁମେ ତ ଉପର ମୁହଁରେ କୁହ ଡେସପାରେଟ ଝିଅଙ୍କୁ ପସନ୍ଦ କରନାହିଁ, ଭିତରେ ଭିତରେ ଠିକ୍‌ହିଁ ପସନ୍ଦ କର ।

ଶରିଫାର କଥାପ୍ରତି କର୍ଣ୍ଣପାତ ନକରି ଆତାହାର ପଚାରେ—ଶ୍ମଶାନକୁ ଯାଇ କ'ଣ କଲେ ?

—କିଛି ନୁହେଁ । ଛିଡ଼ା ହୋଇଥିଲି ।

—ଛିଡ଼ା ହୋଇଥିଲେ ? ଖାଲି ଖାଲି ମଣିଷ ଛିଡ଼ାହୋଇ ରୁହେ ପରା ? ହା-ହା-ହା ।

କଲ୍ୟାଣୀ ଆତାହାର ମୁହଁକୁ ଚାହିଁ ଖୁବ୍ ଆଶ୍ଚର୍ଯ୍ୟ ହୁଏ । ସେ ପର୍ଯ୍ୟନ୍ତ ତା' ଓଠରୁ ହସଟି ନିଭିନଥାଏ ।

ଆତାହାର ତା'ର ଲୋମଶ ଛାତି ଉପରେ ହାତ ବୁଲାଉ ବୁଲାଉ କୁହେ—ଆମେ ତ ଆଜମିର ଶରୀଫ ଯିବାପାଇଁ ଇଚ୍ଛା କରିଛୁ । ଦେଖେ ଆସନ୍ତା ବର୍ଷ ପାରୁଛି କି ନାହିଁ ।

—ଶରିଫା ବି ନିଶ୍ଚୟ ଯିବ ?

କଲ୍ୟାଣୀ ଶରିଫା ମୁହଁକୁ ଚାହିଁଲା । ତା'ର କପାଳ ଓ ଚିବୁକ ଉପରେ ବିନ୍ଦୁ ବିନ୍ଦୁ ଝାଳ ଜମିଉଠିଛି ।

—ତା'ର ଠିକ୍‌ନାହିଁ । ପୁଅଝିଅଙ୍କୁ କାହାପାଖରେ ଛାଡ଼ିଯିବ ! ସେ ବୋଧହୁଏ ପାରିବ ନାହିଁ । ଆପଣଙ୍କ ଘର ତ ସଲ୍‌ଟଲେକ୍‌ରେ । ସଲ୍‌ଟଲେକ୍ କଲିକତାର ଉତ୍ତର ନା ଦକ୍ଷିଣ ଦିଗରେ ?

—କଲିକତା ଗଲେ ଆମ ଘରକୁ ଯିବେ । ମୁଁ ଠିକଣା ଦେଇଯିବି ।

ଶରିଫା କଲ୍ୟାଣୀର ପାଖ ଚେୟାରରେ ବସିଥାଏ । ପିଲା, ଅତିଥି ଏବଂ ସ୍ୱାମୀଙ୍କୁ ଖାଇବାକୁ ଦେଇସାରିବା ପରେ ସେ ଖାଇବ । ତାକୁ ସାଥିରେ ଖାଇବାପାଇଁ କଲ୍ୟାଣୀ ଜିଦ୍‌କରେ । ଶରିଫା ମୁଣ୍ଡ ହଲାଇ କୁହେ—ପୂର୍ବରୁ ଖାଇବାର ଅଭ୍ୟାସ ନାହିଁ ।

—ଆଜି ମୋ ସହିତ ଖାଇନେ । ଅଭ୍ୟାସଟା କ'ଣ ଗୋଟାଏ ଦିନପାଇଁ ଚେଞ୍ଜ୍ କରାଯାଏ ନାହିଁ ।

ଶରିଫା ନତଦୃଷ୍ଟିରେ କୁହେ—କେତେ ଅଭ୍ୟାସ ତ ବଦଳାଇବାକୁ ହେଲା । ନୂଆକରି ଅଭ୍ୟାସ କରିଲେ ପରେ...

—କହ, ପରେ କ'ଣଟା ହେବ ?

—ନା ଥାଉ, କିଛି ନୁହଁ ।

—କିଛି ତ ନିଶ୍ଚୟ ଅଛି ଶରିଫା । ମୋତେ ଯେପରି କିଛି ତୁ ଲୁଚାଉଛୁ, ମୋତେ ପରବୋଲି ଭାବୁଛୁ ପରା ?

କଲ୍ୟାଣୀ ଶରିଫାର ବାମହାତଟିକୁ ଚାପିଧରେ । ହାତଟି ତତ୍‌କ୍ଷଣାତ ଛଡ଼ାଇ ନେଇ ଶରିଫା କୁହେ—ବାସ୍ତବରେ ମୋତେ ବର୍ତ୍ତମାନ ଭୋକ ହେଉନାହିଁ ।

—ତୋର କ'ଣ ଦେହ ଖରାପ ?

—ନା ନା ।

—ତେବେ କ'ଣ ମନ ଖରାପ ?

—ମନ ? ଶରିଫା ମ୍ଳାନ ହସେ ।

ଆତାହାରର କଣ୍ଠରେ କିଛି ଶ୍ଲେଷ କିଛି ଅହଙ୍କାର ଖେଳିବୁଲେ—ଆମର ଟେଲିଭିଜନ ଦେଖିଛନ୍ତି ? ଭଲ ନାଟକ ହୁଏ କିନ୍ତୁ । ଆଜିମଧ୍ୟ ନାଟକ ଅଛି, ଆସି ଦେଖନ୍ତୁ । ହଁ, ବାବରି ମସଜିଦ୍ ଖବର ଆଉ କ'ଣ ? ସେ ଦେଶରେ ତ ଆପଣମାନେ ଆମ୍ଭମାନଙ୍କୁ ସାରୁକାଟିବା ଭଳି କାଟିବାରେ ଲାଗିପଡ଼ିଛନ୍ତି ।

—ଆପଣମାନଙ୍କୁ ମାନେ ? କଲ୍ୟାଣୀ ପଚାରେ ।

—ଆମମାନଙ୍କୁ ମାନେ ମୁସଲମାନମାନଙ୍କୁ ।

ଏହାପରେ କଲ୍ୟାଣୀର ହାତ ପ୍ଲେଟ ଉପରେ ସ୍ଥିର ହୋଇଯାଏ । ଢକଢକ କରି ସେ ପାଣି ପିଇଯାଏ । କେବେଠାରୁ ଏଇ ପାଣି ପିଇବାକୁ ତା'ର ତୃଷ୍ଣା, ତଥାପି ତୃଷ୍ଣା ମେଣ୍ଟେନାହିଁ । ଦୀପେନ ଖାଇସାରିବା ପରେ ଘର ଭିତରକୁ ଶୋଇବାକୁ ଯାଏ । କଲ୍ୟାଣୀ ହଠାତ କୁହେ—ଶରିଫା, ଶରୀରଟା ଖୁବ୍ କ୍ଳାନ୍ତ । ତୁ ଖାଇନେବୁ । ମୁଁ ବରଂ ଶୋଇବାକୁ ଯାଏ ।

ଶରିଫା ମୁଣ୍ଡ ହଲାଇ ସମ୍ମତି ଜଣାଏ । ସମ୍ଭବତଃ ତା ସ୍ୱାମୀ ଯେଉଁ ଆଡ଼ମ୍ବର ଆୟୋଜନ କରୁଛନ୍ତି ତାକୁ ବଢ଼ାଇବାକୁ ନଦେଇ ଘରଭିତରକୁ ଯାଇ ଶିକୁଳି ଲଗାଇ କଲ୍ୟାଣୀର ଶୋଇପଡ଼ିବା ଉଚିତ ବୋଲି ସେ ମନେକରେ ।

ପରଦିନ କୁଆ ରାବିବା ସଙ୍ଗେ ସଙ୍ଗେ କଲ୍ୟାଣୀ ଶଯ୍ୟା ତ୍ୟାଗକରେ । ଉଠି ଦୀପେନକୁ କୁହେ 'ଚାଲ, ଚାଲ ପ୍ରସ୍ତୁତ ହୋଇଯାଅ' । ଏଥର ମଧ୍ୟ ଦୀପେନ ମନେକରି ନେଇଥିଲା, କଲ୍ୟାଣୀ ସମ୍ଭବତଃ ପୂର୍ବ ଦିନପରି ଆଜି ମଧ୍ୟ ତାକୁ ନେଇ ଖରାରେ ବୁଲିବାକୁ ଯାଉଛି । ମୁହଁ ଆଖି ଧୋଇ, ଶାଢ଼ି ବଦଳେଇ, ସିନ୍ଥିରେ ସିନ୍ଦୂର ଲଗାଇବାକୁ ଯିବା ସମୟରେ କଲ୍ୟାଣୀର ଆଙ୍ଗୁଳି ଥରିଉଠେ । ସେ ଆଉ ସିନ୍ଦୂର ପିନ୍ଧେ ନାହିଁ । ଆଙ୍ଗୁଳିରେ ଲାଗିଥିବା ଲାଲଟିକୁ ଆଙ୍ଗୁଳିରେହିଁ ପୋଛିଦିଏ । ଟ୍ରେଜର ଆଇଲାଣ୍ଡରୁ ଶରିଫା ପାଇଁ ସେ କେତୋଟି ଶାଢ଼ି କିଣିଥିଲା । ସେଗୁଡ଼ିକ ବାହାରକରି ଦେବା କଥା ତା'ର ମନେ ନଥିଲା । ଶରିଫାକୁ ଡାକି ତା' ହାତକୁ ଶାଢ଼ିଗୁଡ଼ିକ ବଢ଼ାଇଦେଇ କଲ୍ୟାଣୀ କହିଲା— ଏଗୁଡ଼ିକ ତୋରିପାଇଁ । ପିଲାମାନଙ୍କ ପାଇଁ କିଛି ହେଲେ ଆଣିନି । ପ୍ରକୃତ କଥାଟା କ'ଣ ଜାଣୁ ଶରିଫା, ମୋ ପରି ତୁ ବି ଯେ ବଡ଼ ହୋଇଛୁ, ଝିଅ ବାହାଘର କରିଛୁ, ଏକଥା ଆଦୌ ମୋ ମନରେ ଧାରଣା ହୋଇନି । କାହିଁକି କେଜାଣି ମୋର ମନେ ହେଉଥିଲା ତୋର ବୟସ ବୋଧହୁଏ ସେଇ ଷୋହଳ-ସତରରେ ହିଁ ରହିଛି ।

ବିଛଣାରେ ପାରିଥିବା ଚଦରଟି ଚଉତି ରଖୁଥିବା ସମୟରେ କଲ୍ୟାଣୀ କହିଲା— କଲିକତାର ଠିକଣାଟି ଦେଇଯାଉଛି, କେବେ ଗଲେ ଆମ ଘରକୁ ଯିବୁ । ତୁମକୁ ଖୁବ୍ କଷ୍ଟ ଦେଇଗଲି, ନା ?

ଶରିଫା ହାଇମାରି କହିଲା—ନା ନା, କଷ୍ଟ ଗୋଟାଏ କ'ଣ ? ସାମାନ୍ୟ ଜଳଖିଆ ଖାଇଗଲେ ଭଲ ହୁଅନ୍ତା ନାହିଁ ?

—ନାରେ, ଖାଇବା-ପିଇବା ପାଇଁ ମୋର ଆଦୌ ଇଚ୍ଛା ନାହିଁ ।

କଲ୍ୟାଣୀ ଜାଣେନା, ହଠାତ୍ ଶରିଫା କାହିଁକି ତା'ର ହାତ ସ୍ପର୍ଶକଲା । କଲ୍ୟାଣୀ ଚମକିପଡ଼େ । ଏ କ'ଣ ସେଇ ତା'ର ବାଲ୍ୟସଙ୍ଗିନୀର ହାତ ଯେଉଁ ହାତ ତାକୁ ଦିବାରାତ୍ର ବାନ୍ଧି ରଖୁଥିଲା ? ଆହୁରି କିଛିକ୍ଷଣ ହାତଟି ତାକୁ ସ୍ପର୍ଶ କରିଥାଉ ବୋଲି କଲ୍ୟାଣୀ କାମନା କରେ । ତିରିଶବର୍ଷ ପୂର୍ବପରି ଏଇ ହାତଟି ତାକୁ ଥରେ ନିବିଡ଼ ଭାବରେ ଜଡ଼ାଇଧରୁ । ଶରିଫାର ହାତ ଉପରେ କଲ୍ୟାଣୀ ନିଜର ହାତରଖେ । କିଛି ପରିମାଣରେ କମ୍ପନ ସେ ନିଜ ହାତରେ ଅନୁଭବ କରେ । କଥା କହିବାକୁ ଯାଇ ଦୃଷ୍ଟି ତା'ର କାତର ହୁଏ, ଅକାରଣରେ ଚକ୍ଷୁ ଲୋତକାପ୍ଳୁତ ହୋଇଯାଏ, ଅଶ୍ରୁ ସମ୍ବରଣ କରିବାକୁ ଯାଇ ସେ ହସେ । କୁହେ—ଶରିଫା, ନଦୀରେ କ'ଣ ଆଉ ବନ୍ୟା ହେବ ନାହିଁ ? ପୂର୍ବପରି ଢେଉଢେଉକା ପାଣି ?

ଶରିଫା ନିଜର ହାତଟି ଉଠାଇ ନେଇ ଅସଂଯତ କେଶରାଶିକୁ ପଛକୁ ନେଇ ଖୋଷା ତିଆରି କରୁ କରୁ କୁହେ—ନଦୀର ସ୍ୱଭାବ କ'ଣ ଆଉ ମୁଁ ଜାଣେ ? କଲ୍ୟାଣୀ ମନେ ମନେ ଭାବେ—ମଣିଷର ସ୍ୱଭାବ ବି ମଣିଷ ଜାଣେ ନାହିଁ । ବ୍ରହ୍ମପୁତ୍ର ଭଳି ତା'ର ଜନ୍ମମାଟି ସହରଟିର ମଣିଷଗୁଡ଼ିକ ମଧ୍ୟ ଖୁବ୍ ମ୍ଳାନ, ଖୁବ୍ ଶୀର୍ଣ୍ଣ, ଖୁବ୍ ଦୁଃଖୀ ମନେ ହୁଅନ୍ତି ।

ବାରଣ୍ଡାରେ ଗ୍ରୀଲ୍‌ଧରି ଛିଡ଼ା ହୋଇଥିବା ଶରିଫାକୁ ପଛରେ ପକାଇ କଲ୍ୟାଣୀ ଯେତେବେଳେ ରାସ୍ତା ଉପରକୁ ଆସେ, ଆଲହାମ୍‌ଦୁଲିଲଲାହ ହିରାବିବଲ ଆଲ ଆମିନ...ସ୍ୱରଟି ହଠାତ୍ ସ୍ଥିର ହୋଇଯାଏ । ସେ ବୁଝିପାରେ ଅନେକ ଆଖି ଅପଲକ ଦୃଷ୍ଟିରେ ତାକୁ ଯେତେଦୂର ପର୍ଯ୍ୟନ୍ତ ଦେଖିବା ସମ୍ଭବ, ଦେଖୁଛନ୍ତି । ଷ୍ଟାଣ୍ଡରେ ବସ୍ ଛିଡ଼ାହୋଇ ରହିଥିଲା । ଏଥର ମଧ୍ୟ ଝରକା ପାଖକୁ ଥିବା ଦୁଇଟି ସିଟ୍ ସେ ଯୋଗାଡ଼ କରିନେଲା । ବସ୍ ଚାଲିବାକୁ ଆରମ୍ଭ କରିଦେଲାରୁ ଦୀପେନ ପ୍ରଶ୍ନକଲା—ମା' ବର୍ତ୍ତମାନ ଆମେ କୁଆଡ଼େ ଯାଉଛୁ ?

—କଲିକତାକୁ ।

—ଏଇ ବସ୍‌ରେ କଲିକତା ଯିବା ?

—ନା, ବସ୍‌ରେ ଢାକା ଯିବା । ଢାକାରୁ ପ୍ଳେନ୍ ଚଢ଼ି ସିଧା କଲିକତା । ଟିକେଟ୍‌ଟାକୁ ମଧ୍ୟ ରି-କନଫାର୍ମ କରିବାକୁ ହେବ ।

ଉଦାସ ଦୃଷ୍ଟିରେ କଲ୍ୟାଣୀ ଝର୍କା ଆଡ଼କୁ ଚାହିଁ ଉତ୍ତର ଦିଏ ।

ଦୀପେନ ଆତଙ୍କିତ ହୋଇ ପ୍ରଶ୍ନକରେ—କାହିଁକି, ତୁମ ଘର ଦେଖିବି ନାହିଁ ? ପୋଖରୀରେ ସୁଇମିଂ କରିବି, ଗଛରେ ଚଢ଼ି ଆମ୍ବତୋଳି ଖାଇବି ବୋଲି ଭାବିଛି । ପିଲାବେଳେ ତୁମେ ଯେଉଁ ଘରେ ଶୋଉଥିଲ, ଯେଉଁ ପଡ଼ିଆରେ ଖେଳୁଥିଲ, ସେସବୁ ଦେଖାଇବ ନାହିଁ ?

—ଦୀପେନ, ଏହି ସହରରେ ଖୁବ୍ ବଡ଼ ଧରଣର ଏକ ଭୂମିକମ୍ପ ହୋଇଯାଇଛି । ଘରଦ୍ୱାର ସବୁ ଭାଙ୍ଗିଯାଇଛି । ପୂର୍ବର କୌଣସି ଜିନିଷ ଆଉ ନାହିଁ ।

—'ଲାଷ୍ଟଡେଜ ଅଫ୍ ଦି ପାମ୍ପେଇ'—ଭଳି ଭୂମିକମ୍ପ ?

—ହଁ ହଁ, ସେହିପରି ।

—ଆଉ ଗଛଗୁଡ଼ିକ ?

—ଝଡ଼ରେ ବିପର୍ଯ୍ୟସ୍ତ ହୋଇଯାଇଛନ୍ତି । ଟର୍ଣ୍ଣାଡ଼ୋ ହେଲେ କ'ଣ କିଛି ରୁହେ ?

—ତୁମେ କହିଥିଲ ନା ଶଶିକାନ୍ତଙ୍କ ରାଜବାଟୀ ଦେଖାଇବ ?

—ସେଇ ଯେଉଁ ବଡ଼ ବଡ଼ ଶିରୀଶ ଗଛତଳେ ଗୋଟିଏ ଗେଟ୍ ଭିତରେ ହଳଦୀରଙ୍ଗର ରାଜଉଆସ, ରାଜଉଆସ ସମ୍ମୁଖରେ ମାର୍ବଲ ପଥରର ଏକ ଧଳାମୂର୍ତ୍ତି, ଗେଟ୍‌ର ଦରୱାନ କହିଥିଲା ପରିମିଶନ୍ ଛଡ଼ା ଭିତରକୁ ଯାଇପାରିବ ନାହିଁ—ସେଇଟି ହେଉଛି ଶଶିଲଜ୍ ।

—ଆଉ ମୁକ୍ତାଗାଛାର ମଣ୍ଡା ? କଲିକତାରେ କେତେଜଣଙ୍କୁ କହି ଆସିଥିଲ ମଣ୍ଡା ନେଇଯିବ ବୋଲି ! ଉଆର୍ଲଡ଼ର ସବୁଠାରୁ ଭଲ ମିଠା ।

—ଓହୋ, ସେକଥା ତ ଭୁଲିଯାଇଛି ।

—ଆଉ ରେସ୍‌କୋର୍ସ ? ଘୋଡ଼ା ପିଠିରେ ଚଢ଼ିବି ନାହିଁ ?

—ରେସ୍‌କୋର୍ସ ତ ଢାକାରେ ! ଢାକାର ରାସ୍ତାଘାଟ କ'ଣ ମୁଁ ଚିହ୍ନିଛି ?

ଦୀପେନର ବିସ୍ମୟ ଦୂର ହୁଏନାହିଁ । ଖୋଲା ପବନରେ ଦୀପେନର କେଶ ଉଡୁଥାଏ ।

—ଆଉ ବ୍ରହ୍ମପୁତ୍ର ? ତୁମର ନଦୀ ? ନୌକାରେ ବୁଲିଯିବା ନାହିଁ ?

ଦୀପେନ ପ୍ରାୟ ନାଚିଉଠେ । ଯେପରିକି ବ୍ରହ୍ମପୁତ୍ର ଦେଖିବା ପାଇଁ ବସ୍‌କୁ ଏହିଠାରେ ଅଟକାଇ ସେମାନଙ୍କର ଓହ୍ଲାଇ ପଡ଼ିବା ଉଚିତ ।

—ବ୍ରହ୍ମପୁତ୍ର ? ବ୍ରହ୍ମପୁତ୍ର ତା'ର ଦିଗ ପରିବର୍ତ୍ତନ କରିଛିରେ ଦୀପେନ । ପୂର୍ବସ୍ଥାନରେ ଆଉ ନାହିଁ ।

—ପୂର୍ବସ୍ଥାନରେ ନାହିଁ ?

—ନା ।

ତଥାପି ଦୀପେନର ବିସ୍ମୟ ଦୂରହୁଏ ନାହିଁ । ଯେତେଥର ମୁକ୍ତ ପବନ ତା'ର କେଶରାଶିକୁ ବିପର୍ଯ୍ୟସ୍ତ କରେ, କଲ୍ୟାଣୀ ଆଙ୍ଗୁଳି ଚଳାଇ ତାହାକୁ ସଜାଡ଼ିଦିଏ ।

—ତୁମେ କହୁଥିଲ ନା ଏଠାରେ ଦୁଇ ସପ୍ତାହ ରହିବ ? ଦୀପେନ ପ୍ରଶ୍ନକରେ ।

—ଗୋଟାଏ ଖୁବ୍ ଜରୁରୀ କାମ ଶେଷ ନକରି ଚାଲିଆସିଛି ବାବା, ପୂର୍ବରୁ ଏହା ମୋର ମନେ ନଥିଲା, ନଗଲେ ଚଳିବ ନାହିଁ ।

—ସମ୍ଭବତଃ ସ୍କୁଲ କାମ ?

—ହଁରେ ।

ଅନେକକ୍ଷଣ ଚୁପ୍ ରହିବାପରେ କଲ୍ୟାଣୀକୁ ହଲାଇଦେଇ ଦୀପେନ ପୁଣି ପଚାରେ—ତୁମେ ସେତେବେଳେ କାନ୍ଦୁଥିଲ କାହିଁକି ମା' ? ସେହି ଗଛ ତଳେ ? ସେମାନେ ତୁମକୁ ଗାଳି ଦେଉଥିଲେ ବୋଧେ ?

ଦୀପେନକୁ ଦୁଇହାତରେ ନିବିଡ଼ ଭାବରେ ଧରି କଲ୍ୟାଣୀ କୁହେ—ଛି ଛି, ସେମାନେ ଗାଳିଗୁଲଜ କରିବେ କାହିଁକି ? ମୋ ମା'ଙ୍କ କଥା ଖୁବ୍ ମନେପଡ଼ିବାରୁ କାନ୍ଦିପକାଇଥିଲି । ଦେଖିଲ ନାହିଁ ଜଣେ ଭଦ୍ରଲୋକ ଆସି କିପରି କହିଲେ—ମା' ଉଠ, କାହାରି ଘରକୁ ହେଲେ ଯାଇ ଖାଇପିଇ ବିଶ୍ରାମ ନିଅ ! ଭଦ୍ରଲୋକ ଦେଖିବାକୁ ଠିକ୍ ମୋର ଜେଜେବାପାଙ୍କ ପରି ।

—ତୁମର ଜେଜେବାପା ଥିଲେ ପରା ?

—ବାଃ, ରହିବେ ନାହିଁ କାହିଁକି ? ମୁଁ କ'ଣ ଆକାଶରୁ ଖସିପଡ଼ିଛି ? ତା'ଛଡ଼ା ସ୍ୱପନ, ଦେଖିଲ ତ ଆମକୁ କେତେ ଆଦର ଅଭ୍ୟର୍ଥନା କଲେ ? ଘରକୁ ନେଇ କେତେ

ଯେ କ'ଣ ଖାଇବାକୁ ଦେଲେ । କେତେ କଥା କହିଲେ । ଠିକ୍ ନା ଦୀପେନ ? ବାପା ଓ ଦିଦିଙ୍କୁ କହିବ ସେମାନେ ତୁମକୁ ଖୁବ୍ ଆଦର କରିଛନ୍ତି ।

ଦୀପେନ ମୁଣ୍ଡହଲାଇ କହିଲା—ଆଚ୍ଛା ।

—ଆଉ ସ୍ୱପନର ପୁଅଟି ? ତା'ର ନାମ କ'ଣ ରେ ?

—ସୌଖୀନ ।

—ତୁମେ ତ ତା' ସହିତ ଖେଳିଲ । ଖେଳିଲ ନାହିଁ ?

—ହୁଁ ।

—ସେ କ'ଣ ତୁମକୁ ଭଲ ଲାଗିଲା ନାହିଁ ?

ଦୀପେନ ହସି କହିଲା—ଲାଗିଛି ।

ବସ୍ ଚାଲିଛି । ତ୍ରିଶାଳା ଛାଡ଼ି ଭାଲୁକା ଅଭିମୁଖେ, ବାହାରର ଉତ୍ତପ୍ତ ପବନରେ କଲ୍ୟାଣୀର ମୁହଁ-ନାକ ପୋଡ଼ି ହୋଇଯାଉଥିଲା । ଅନ୍ତରର ଦୀର୍ଘଶ୍ୱାସ ଚାପି ସେ ତା'ର ପୁଅକୁ ଡାକେ—ଦୀପେନ !

ଫସଲ ଉଠିଯାଇଥିବା ଶୂନ୍ୟକ୍ଷେତ ଉପରୁ ଦୃଷ୍ଟି ଫେରାଇଆଣି ଦୀପେନ କୁହେ—କ'ଣ ମା' ?

—ତୁମ ଶରିଫା ଆଣ୍ଟି କିନ୍ତୁ ତୁମକୁ ଖୁବ୍ ପସନ୍ଦ କରିଛନ୍ତି । କହିଛନ୍ତି, ଦୀପେନ ଖୁବ୍ ସୁଧାର ପିଲା । ଦେଖିଲନାହିଁ ତୁମପାଇଁ ନିଜ ହାତରେ ପଲାଉ କୋରମା ରାନ୍ଧିଥିଲେ ! ତୁମକୁ ଗୋଟିଏ ସାଇକେଲ କିଣିଦେବା ପାଇଁ ମୋ ହାତରେ ଟଙ୍କା ମଧ୍ୟ ଦେଇଛନ୍ତି । ବାପାଙ୍କୁ କହିବ, ସେ ଆମ୍ଭମାନଙ୍କର ଖୁବ୍ ଆଦରଯତ୍ନ କରିଛନ୍ତି ।

ବିସ୍ମୟାନ୍ୱିତ ଆଖିରେ ଦୀପେନ କଲ୍ୟାଣୀର ମୁହଁକୁ ଚାହିଁରହିଥାଏ । କଲ୍ୟାଣୀ ପୁଣିଥରେ ତା'ର କେଶ ସାଉଁଳେଇ ଦିଏ । ସେ ମୁଣ୍ଡ ନୁଆଁଇ କୁହେ—ଆଚ୍ଛା ।

ଶରିଫା କ'ଣ କିଛି କହିବାକୁ ଚାହୁଁଥିଲା ? କଲ୍ୟାଣୀର ବାରମ୍ବାର ମନେପଡ଼େ, ନିଶ୍ଚୟ ସେ କିଛି କହିବାପାଇଁ ତାକୁ ଛୁଇଁଥିଲା, ହାତଟି ଉଠାଇ ନେଇ କେଶରେ ଖୋଷାକଲା, କଲ୍ୟାଣୀ ସ୍ୱଷ୍ଟଭାବରେ ଲକ୍ଷ୍ୟ କରିଥିଲା, ଶରିଫା ଲୁଗାକାନିରେ ମୁହଁ ପୋଛିଥିଲା । ସେ କ'ଣ ତା' ସଙ୍ଗେ ସଙ୍ଗେ ଆଖିରୁ କିଛି ଲୁହ ପୋଛିଥିଲା ! କଲ୍ୟାଣୀର ବିଶ୍ୱାସ ହୁଏ ଶରିଫା ନିଶ୍ଚୟ ଲୁହ ପୋଛିଥିଲା । ସେଇ ଅଠରବର୍ଷ ବୟସରେ

ହରିନାରାୟଣ ତାକୁ ଦେଶରୁ ବିଦା କଲାବେଳେ, ଶରିଫା କାନ୍ଦିଥିଲା, ଏଥର ସେ ଯେତେବେଳେ ନିଜେ ହିଁ ଦେଶତ୍ୟାଗ କରି ଯାଉଛି, ଶରିଫା କାନ୍ଦିବନାହିଁ କେମିତି ? ଲୋଟିପଡ଼ି କାନ୍ଦିବାର ସେଇ ବୟସ ହୁଏତ ନାହିଁ କିନ୍ତୁ ସେଇ ମନ ତ ରହିଛି, ମନକୁ କ'ଣ କେହି ବଦଳାଇ ଦେଇପାରେ ? ଶରିଫାକୁ ହୁଏତ ସ୍ୱାମୀଙ୍କର ସଂସାର ସହିତ ସମତାଳ ରକ୍ଷାକରି ଚାଲିବାକୁ ହୁଏ, ତା' ବୋଲି ସେ ତା'ର ଧୂଳିଘର ଖେଳକଥା ଭୁଲିଯାଇଛି ! ସେଇ ଖେଳଦୌଡ଼ ? ସେଇ ବୁଢ଼ାପହଁରାର ଦିପହରଗୁଡ଼ିକ ? ଦୁଇଟି ଦୁରନ୍ତ ଝିଅର ଗଛଚଢ଼ି ବୁଲିବା, ସହର ସାରା ଘୂରିବୁଲିବା, ଉଡ଼ିବୁଲିବା ? କ୍ଲାସରେ ଇଂରାଜୀ ଶିକ୍ଷକ ନିଲ୍‌ଡ଼ାଉନ୍ କରାଇ କୁହନ୍ତି–ତୁମମାନଙ୍କର ଯାହା କଥାବାର୍ତ୍ତା ଅଛି ଏହା ପରଠାରୁ ଶ୍ରେଣୀକୁ ପ୍ରବେଶ କରିବା ପୂର୍ବରୁ ଶେଷକରି ଆସିବ, କ୍ଲାସରେ ବସି ଫୁସ୍‌ଫୁସ୍ ହେବା ଚଳିବ ନାହିଁ ।

ବାହାରେ କ'ଣ ଆଉ ସବୁକଥା ଶେଷହୁଏ ! କଥା କହିବା ସମୟରେ ଇଂଲିଶ ଟିଚରଙ୍କ କଳରୁ କିପରି ପାନପିକ ବହିପଡ଼େ, କିପରି ୱାର୍ଡ଼୍‌ସ୍‌ୱାର୍ଥଙ୍କ ଡାଫୋଡିଲ୍ ପଢ଼ାଇବାକୁ ଯାଇ ସେ ଢୁଳାନ୍ତି, କେହି ଯଦି ହସେ ତେବେ କିପରି ଡଷ୍ଟର୍ ଉଞ୍ଚାଇ ତା' ପାଖକୁ ଧାଇଁ ଆସନ୍ତି–ଏହା ଦେଖି ହସକୁ କ'ଣ ଆଉ ଶ୍ରେଣୀ ବାହାର ପାଇଁ ଜମା ରଖାଯାଇପାରେ ! ଖିଲିଖିଲି ହସ ସହିତ ଅନର୍ଗଳ ଛନ୍ଦ କବିତା ସୃଷ୍ଟି ହୁଏ । ମାଳବିକା ନାମରେ ଝିଅଟିଏ, ଯେ ମୁହେଁ ମୁହେଁ ଛନ୍ଦ କବିତା ସୃଷ୍ଟିକରେ, କଲ୍ୟାଣୀ ଓ ଅନ୍ୟାନ୍ୟ ଦୁଷ୍ଟ ସାଥୀମାନଙ୍କ ସହିତ ସେହି ବେଞ୍ଚରେ ଯୋଗ ଦେଉଥିଲା । ମୁଣ୍ଡରେ ବନ୍ଧା ହୋଇଥିବା ଛୋଟ ଛୋଟ କେଶକୁ ସେ ଝୁଲାଇ ଝୁଲାଇ କହୁଥିଲା–'ଅବଦୁଲ କାଦେର ମୁଲ୍ଲା, ଖାଆନ୍ତି ରସଗୋଲ୍ଲା, ଢୁଳାନ୍ତି ଶ୍ରେଣୀ ଗୃହେ ବସି, ରାଗିଉଠନ୍ତି ଦିବାନିଶି, ପରୀକ୍ଷା ରହିଛି ଆଗରେ, ଗୋଲଆଳୁ ଯେ କପାଳରେ ।' ସେଥର ମାଳବିକା ଇଂରାଜୀରେ ସବୁଠାରୁ ବେଶି ନମ୍ବର ରଖିଥିଲା, କାଦେର ମୁଲ୍ଲା ଚିବୁକର ତଳେ ଛେଳିଦାଢ଼ି ହଲାଇ, ମୁଣ୍ଡରେ ଜିନ୍ନାଟୋପି ପିନ୍ଧି ଦିନେ କ୍ଲାସକୁ ଆସିଲେ, ମାଳବିକାକୁ ଡାକି କହିଲେ–'ମାଳବିକା ଇଂରାଜୀରେ ସତସ୍ତରି ନମ୍ବର ପାଇଛି । ଆଜି ତା' ସମ୍ମାନରେ ମିଠା ଖିଆହେବ । ତୁମେ ସବୁ ହାତତାଳି ଦିଅ ।' ଶରିଫାର ନିଶ୍ଚୟ ମାଳବିକା କଥା ମନେଅଛି । ରହିବନାହିଁ କାହିଁକି ? ମଣିଷ କ'ଣ କେବେ ମଣିଷକୁ ଭୁଲିଯାଇପାରେ ! ବସ୍‌ର କଣ୍ଡକ୍ଟର ଭଡ଼ାପାଇଁ ଆସେ । କଲ୍ୟାଣୀ ଅବଶ ହାତରେ ବ୍ୟାଗ ଖୋଲେ । ଟେଲିଫୋନ ଇଣ୍ଡେକ୍‌ସ, ହିସାବପତ୍ର ଲେଖା କାଗଜ, ନାମ ଓ ଠିକଣା ଲେଖା ଚିରକୁଟ, ସୁଟ୍‌କେଶର ଚାବି,

ପୁରୁଣା ବିଜୁଳି ବିଲ୍, ଗୋଟିଏ ଛୋଟ ପାନିଆ, କ୍ଲିପ୍, ରୁମାଲ, ଚାରିଗୋଟି ପାରାସିଟାମଲ ଟାବ୍‌ଲେଟ, ପାସପୋର୍ଟ, ବିମାନର ଟିକେଟ ସବୁକିଛି ଅଛି—କେବଳ ଟଙ୍କାଗୁଡ଼ିକ ନାହିଁ । ପ୍ରଥମ ଦିନରୁ କିଛି ଖୁଚୁରା ଟଙ୍କା ବାହାରେ ରଖି ପ୍ରାୟ ଅବଶିଷ୍ଟ ତିନିହଜାର ଟଙ୍କା ହାତବ୍ୟାଗର ଛୋଟ ପକେଟ ଭିତରେ ରଖିଥିଲା । ପୂରା ବ୍ୟାଗଟି ଝାଡ଼ିଝୁଡ଼ି ଦେଖିବା ପରେ ମଧ୍ୟ ଟଙ୍କାଗୁଡ଼ିକ ପାଇଲାନାହିଁ । ହୁଏତ ଅସାବଧାନରେ କେଉଁଠି ପଡ଼ିଯାଇଛି, ରାସ୍ତାରେ, ରିକ୍‌ସାରେ, ପଡ଼ିଆରେ, ବସ୍‌ରେ କେଉଁଠି ବି ହୋଇପାରେ । ତା' ବୋଲି ମଣିଷ କ'ଣ କେଉଁଠି ଅଟକି ରୁହେ, ଦେହ ଉପରେ ଜାଲ ପଡ଼ିଲେ ବି ଛିଡ଼ାଇ ଦିଆଯାଏ, ଏଇ ସାମାନ୍ୟ ସମସ୍ୟାଟି କିପରି ଦୂର କରାଯାଇ ପାରିବ ଭାବୁ ଭାବୁ କଲ୍ୟାଣୀ ତା'ର ବେକରେ ପିନ୍ଧିଥିବା ସୁନା ଚେନ୍‌ଟି ଉପରେ ହାତରଖେ ।



